# କୋଟିକରେ ଗୋଟିଏ : ଗୋପବନ୍ଧୁ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

କୋଟିକରେ ଗୋଟିଏ : ଗୋପବନ୍ଧୁ

ଲେଖକ ଡକ୍ଟର ବିମଳେନ୍ଦୁ ମହାନ୍ତି

ପ୍ରଥମ ସଂସ୍କରଣ ଅକ୍ଟୋବର, ୧୯୯୭

ଦ୍ୱିତୀୟ ସଂସ୍କରଣ ୨୦୦୫

ମୁଦ୍ରଣ ସଂଖ୍ୟା ୧୦୦୦

ପ୍ରକାଶନ ସଂଖ୍ୟା ଏସ୍.ଆର.ସି. -୨୧୨-୧୩/୯୩

ପ୍ରକାଶକ ନିର୍ଦ୍ଦେଶକ,
**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**
ଜନଶିକ୍ଷା ଭବନ, ୟୁନିଟ୍ -୫, ଭୁବନେଶ୍ୱର-୧

ମୁଦ୍ରଣ ପ୍ରିଣ୍ଟେକ୍ ଅଫ୍‌ସେଟ୍ ପ୍ରାଇଭେଟ୍ ଲିମିଟେଡ୍

ମୂଲ୍ୟ ୮ ଟଙ୍କା

**KOTIKARE GOTIE: GOPABANDHU**

Author **Dr. Bimalendu Mohanty**

1st Edition October, 1997

2nd Edition 2005
No. of Copies 1000

Publication No. : SRC -212-13/97

Publisher Director,
**State Resource Centre for Adult Education, Orissa**
Janasiksha Bhawan, Unit-4
Bhubaneswar - 751001

Printed at Print-Tech Offset (P) Ltd.

Price Rs. 8/-

ନଅ ନାହିଁ କି ଛଅ ନାହିଁ ।

ଗୋଟିଏ ବୋଲି ପୁଅ । ଏକୋଇର ବଳା ବିଶିକେଶନ । ରୋଗରେ ପଡ଼ି ଡହଳ ବିକଳ ହେଉଛି । ସାହି ପଡ଼ିଶାର ଯେ ଦେଖୁଛି ଭାବୁଛି, ଆଉ ବେଶି ଦିନ ନୁହେଁ । ଛଅ ବରଷ ପିଲାର କଅଁଳ ଛନ ଛନ ମୁହଁ ଶେତା ପଡ଼ିଗଲାଣି । କରୁଣ ଆଖିରେ ବାପାଙ୍କ ମୁହଁକୁ ଅନେଇ ଶେଯରେ ପଡ଼ିଛି । ଅଲିଅଳ ପୁଅର ଏହି ଅବସ୍ଥା ଦେଖି ବାପାଙ୍କ ମୁହଁ ବି ଦୁଃଖରେ ଥମ୍ ଥମ୍ ।

ଏହି ସମୟରେ ଖବର ପହଞ୍ଚିଲା, ଦୟା ଆଉ ଭାର୍ଗବୀ ନଦୀରେ ବଢ଼ି ଆସିଛି । ତଳ ଅଞ୍ଚଳର ଶହ ଶହ ଲୋକେ ବଢ଼ି କବଳରେ ପଡ଼ି ଡହଳ ବିକଳ ହେଉଛନ୍ତି । ଏ ଖବର ଶୁଣି ପୁଅ ରୋଗ ଶଯ୍ୟା ନିକଟରୁ ସେ ଉଠି ପଡ଼ିଲେ । ଆକୁଳରେ ପୁଅ ବାପାଙ୍କୁ ଅନେଇଛି । ଅତି କରୁଣ ଚାହାଣି । ସେ ଚାହାଣୀ ଦେଖି କେହି ବାପ ସମ୍ଭାଳି ପାରିବ ନାହିଁ । ସେ ଗାମୁଛା କାନିରେ ଆଖି ପୋଛିଲେ । ପାଖରେ ବସିଥିବା ବନ୍ଧୁ ବାନ୍ଧବ, ସାହି ପଡ଼ିଶା ଲୋକଙ୍କୁ କହିଲେ – ''ପୁଅ ତୁମକୁ ଲାଗିଲା । ମୁଁ ଚାଲିଲି ।''

ସମସ୍ତେ ତାଟକା ହୋଇଗଲେ । ଏ କେମିତି କଥା ? ପୁଅ ମରଣ ଶେଯରେ । ଏ ବେଳାରେ ପୁଅକୁ ଛାଡ଼ି ଦେଇ ବାହାରକୁ ଚାଲି ଯିବା ପାଇଁ କେଉଁ ବାପ ବା ବାହାରିବ ? ସଭିଏଁ ବୁଝାଇଲେ - ''ପୁଅର ଏ ହାଲତରେ କେମିତି ଯିବ ବୋଲି କହୁଛ ?''

ସେ ଉତ୍ତର ଦେଲେ – ‘ ଜନମ ମରଣ ଦଇବ ହାତର କଥା । ଏଠି ଗୋଟିଏ ପୁଅ ପଡ଼ିଛି । ତା’ଚାରିପଟେ ତମେ ଏତେ ଲୋକ ଅଛ । କିନ୍ତୁ ସେଆଡ଼େ ଶହ ଶହ ପୁଅ ଝିଅ ତହଳ ବିକଳ ହେଉଛନ୍ତି । ସେମାନଙ୍କୁ ଆହା କହିବାକୁ ପାଖରେ କେହି ନାହିଁ ।’’ ଏତକ କହି ତଳକୁ ମୁହଁ କରି ସେ ଚାଲିଗଲେ । ବଢ଼ି ଅଞ୍ଚଳରେ ବୁଲି ବୁଲି ସେବା କଲେ । ଖିଆ ନାହିଁ, ପିଆ ନାହିଁ । ଖରା ନାହିଁ, ବରଷା ନାହିଁ, ଏ ଗାଁରୁ ସେ ଗାଁକୁ, ଏ ଅଞ୍ଚଳରୁ ସେ ଅଞ୍ଚଳକୁ ବୁଲି ବୁଲି ସେ ଦୁଃଖୀ ଲୋକଙ୍କୁ ଆହା ପଦ ଶୁଣାଇଲେ । ବଞ୍ଚିବାର ଭରସା ଦେଲେ ।

ବଢ଼ି ଛାଡ଼ିଗଲା ପରେ ସେ ଘରକୁ ଫେରିଲେ । ଶୁଣିଲେ ପୁଅ ଆଉ ନାହିଁ । ମଲାବେଳକୁ ଆଦରର ବାପାକୁ ତହଳ ବିକଳ ହୋଇ କେତେ ଖୋଜୁଥିଲା ! ଏକଥା ଶୁଣି ତାଙ୍କ ଆଖିରୁ ଥପ୍ ଥପ୍ ହୋଇ କେତେ ଟୋପା ଲୁହ ଖସି ପଡ଼ିଲା । ତାଙ୍କ ପାଟିରୁ ଭାଗବତରୁ ପଦେ ବାହାରି ପଡ଼ିଲା –

‘‘କରି କରାଉ ଥାଏ ମୁହିଁ,
ମୋ’ ବିନୁ ଅନ୍ୟ ଗତି ନାହିଁ ।’’

କେହି ସାଧାରଣ ମଣିଷ ଏକଥା କରିଥାନ୍ତେ କି ? କିଏ ବା ଗୋଟିଏ ବୋଲି ପୁଅକୁ ମରଣ ମୁହଁରେ ଛାଡ଼ି ଦେଇ ବଢ଼ି ଅଞ୍ଚଳର ଲୋକଙ୍କ ସେବା ପାଇଁ ଯାଇଥାଆନ୍ତା ? ଏଭଳି କାମ କେବଳ ମହାପୁରୁଷମାନେ କରିପାରନ୍ତି ।

ମହାପୁରୁଷମାନଙ୍କ କଥା ଅଲଗା । ତାଙ୍କ ପାଖରେ ପର ଆପଣାର ଭେଦ ନ ଥାଏ । ପରର ଦୁଃଖ ଦେଖିଲେ, ତାଙ୍କ ଛାତି କରତି ହୋଇଯାଏ । ଏଭଳି ମହାପୁରୁଷ ଥିଲେ ଆମ ଗୋପବନ୍ଧୁ । ସେ ଥିଲେ ଓଡ଼ିଶାର କୋଟିକ ଭିତରେ ଗୋଟିଏ; ଯିଏ ଦେଶ ପାଇଁ ନିଜ ଜୀବନକୁ ପାଣି ଛଡ଼େଇ ଦେଇଥିଲେ ।

ଗୋପବନ୍ଧୁ ସୁଆଣ୍ଡୋ ଗାଁରେ ଜନମ ହୋଇଥିଲେ । ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ଥାନା ଭିତରେ ସୁଆଣ୍ଡୋ ଗୋଟିଏ ଛୋଟ ଗାଁ । ପାଖରେ ଭାର୍ଗବୀ ନଈ କୁଳୁ କୁଳୁ ହୋଇ ବହିଯାଉଛି । ଏଇ ଗାଁରେ ଅଠର ଶହ ସତସ୍ତରି ମସିହା ଅକ୍ଟୋବର ନଅ ତାରିଖରେ ଗୋପବନ୍ଧୁ ଜନମ ହୋଇଥିଲେ । ତାଙ୍କ ବାପାଙ୍କ ନାମ ଦୈତ୍ୟାରୀ । ମାଆଙ୍କ ନାମ ସ୍ୱର୍ଣ୍ଣମୟୀ ।

ଶୁଣାଯାଏ, ଗୋପବନ୍ଧୁ ଜନମ ହେବା ପୂର୍ବରୁ ତାଙ୍କ ମାଆ ଅନେକ କଷ୍ଟ ପାଇଥିଲେ । ପ୍ରାୟ ତିନି ଦିନ ଧରି କଷ୍ଟ ପାଇଲା ପରେ ଶେଷରେ ଗୋଟିଏ ସ୍ୱପ୍ନ ଦେଖିଲେ । କିଏ ଜଣେ ସ୍ୱପ୍ନରେ କହିଲେ, ତାଙ୍କର ଖୁବ୍ ଚଞ୍ଚଳ ପୁଅଟିଏ ହେବ । କିନ୍ତୁ ସେ ପୁଅ ତାଙ୍କ ପରିବାର ଭିତରେ ବନ୍ଧା ହୋଇ ରହିବ ନାହିଁ । ଏ ଦୁନିଆରେ ତା'ର କେହି ପର ହୋଇ ରହିବେ ନାହିଁ । ସମସ୍ତେ ତା ପାଇଁ ଆପଣାର ଲୋକ ହେବେ ।

ସେ ସ୍ୱପ୍ନରେ ଆହୁରି ଶୁଣିଲେ ଯେ, ସେ ଅନ୍ୟ କାହା ଘରକୁ ଚାଲିଗଲେ ଯାଇ ପୁଅ ଜନମ ହେବ । ନିଜ ଘରେ ରହିଲେ ହେବ ନାହିଁ । ସେହି ଅନୁସାରେ ତାଙ୍କୁ ଗାଁର ଆଉ ଜଣେ ଲୋକ ଚକ୍ରଧର

ଦାସଙ୍କ ଘରକୁ ନିଆଗଲା । ସପନ କଥା ସତ ହେଲା । ସତକୁ ସତ ମାଆ ନିଜ ଘର ଛାଡ଼ି ପର ଘରେ ପାଦ ଦେଲା ମାତ୍ରକେ ଗୋପବନ୍ଧୁ ଜନମ ହେଲେ । ମାଆଙ୍କର ତିନି ଦିନର ଗର୍ଭକଷ୍ଟ ଶେଷ ହେଲା ।

## ମା' ଛେଉଣ୍ଡ ଜନମ ଦୁଃଖୀ

ଏତେ କଷ୍ଟ ସହି ସ୍ୱର୍ଣ୍ଣମୟୀ ଯେଉଁ ସନ୍ତାନକୁ ଜନ୍ମ ଦେଇଥିଲେ, ତାକୁ ମଣିଷ କରିବାକୁ ସେ ବେଶି ଦିନ ବଞ୍ଚି ରହିଲେ ନାହିଁ । ଅଳ୍ପ ଦିନ ପରେ ତାଙ୍କର ପରଲୋକ ହୋଇଗଲା । ବିଧବା ପିଉସୀ କମଳା ଦେବୀ ଏହି ମାଆ ଛେଉଣ୍ଡ ଗୋପବନ୍ଧୁଙ୍କୁ ପାଳି ମଣିଷ କଲେ । ମାଆର ସ୍ନେହ ସବୁ ପିଲାଙ୍କ ପାଇଁ ଅମୂଲ୍ୟ ଧନ । ଗୋପବନ୍ଧୁ ଏହି ଧନ ହରାଇ ସାରା ଜୀବନ ସ୍ନେହ କାଙ୍ଗାଳ ହୋଇ ରହିଗଲେ । ତେଣୁ ଛେଉଣ୍ଡ ଛୁଆଟିଏ ଭଳି ସେ ଟିକିଏ ଟିକିଏ କଥାରେ କାନ୍ଦି ପକାଉଥିଲେ । ମାଆଙ୍କୁ ହରାଇ ଥିବାର ଦୁଃଖ ଯୋଗୁଁ ସେ ଅନ୍ୟର ଦୁଃଖ ସହଜରେ ବୁଝି ପାରୁଥିଲେ ।

## ପିଲାଦିନର ପାଠ ପଢ଼ା

ଗୋପବନ୍ଧୁଙ୍କ ବାପା ଦୈତ୍ୟାରୀ ଜଣେ ମୁକ୍ତ୍ୟାର ଥିଲେ । ସେକାଳରେ ମୁକ୍ତ୍ୟାରମାନେ କଚେରିରେ ଓକିଲଙ୍କ ଭଳି ଆଇନ ବ୍ୟବସାୟ କରୁଥିଲେ । ଏବେ ଏହା ଉଠିଯାଇଛି । କଟକକୁ ଛାଡ଼ି ଦେଲେ ଅନ୍ୟ ଜିଲ୍ଲାମାନଙ୍କରେ ସେତେବେଳେ କେହି ଓକିଲ ନ ଥିଲେ ।

ମୁକ୍ତ୍ୟାରମାନେ କଚେରିରେ ମକଦ୍ଦମା ଲଢୁଥିଲେ । ସେମାନଙ୍କ ସଂଖ୍ୟା ବି ଢେର କମ୍ ଥିଲା । କେଉଁଠି କେଉଁଠି ଦୁଇ ତିନି ଜଣରୁ ବେଶି ନ ଥିଲେ । ଏହି ମୁକ୍ତ୍ୟାର ବ୍ୟବସାୟରୁ ଦୈତ୍ୟାରୀଙ୍କୁ ବେଶ୍ ଦି' ପଇସା ମିଳୁଥିଲା ।

ଦୈତ୍ୟାରୀ ପାଠ ପଢ଼ାର ମୂଲ୍ୟ ବୁଝିଥିଲେ । ତେଣୁ ସେ ନିଜ ପୁଅମାନଙ୍କର ପାଠ ପଢ଼ା ପ୍ରତି ମନ ଦେଇଥିଲେ । ଗୋପବନ୍ଧୁଙ୍କ ଛଡ଼ା ତାଙ୍କର ନାରାୟଣ ବୋଲି ଆଉ ଗୋଟିଏ ପୁଅ ଥିଲା । ସେ ଗୋପବନ୍ଧୁଙ୍କ ଠାରୁ ବଡ଼ ।

ପୁଅମାନଙ୍କୁ ପାଠ ପଢ଼ାଇବାକୁ ସିନା ଦୈତ୍ୟାରୀ ମନ ବଳାଇଲେ, ହେଲେ ପାଖରେ ତ ସ୍କୁଲ ନାହିଁ ! କ'ଣ କରାଯିବ ? ପୁଅ ଦିହିଙ୍କର ପାଠ ପଢ଼ା ପାଇଁ ସେ ଜଣେ ଅବଧାନଙ୍କୁ ରଖିଲେ ।

ଆଗକାଳରେ ଥିଲାବାଲା ଲୋକେ ନିଜ ପିଲାମାନଙ୍କୁ ପଢ଼ାଇବା ପାଇଁ ଅବଧାନ ରଖୁଥିଲେ । ଏହି ଅବଧାନମାନେ ଚାଟଶାଳୀ ଖୋଲୁଥିଲେ । ସେଠାରେ ପାଖ ଆଖର ଆଉ ପିଲାମାନେ ବି ପଢୁଥିଲେ । ଚାନ୍ଦା କରି ତାଙ୍କ ଖାଇବା ପିଇବା ଖରଚ ଦିଆ ଯାଉଥିଲା । ସେ ମଧ୍ୟ ଅଳ୍ପ ଦରମା ନେଉଥିଲେ ।

ଅବଧାନ ପିଲାମାନଙ୍କୁ ଅ, ଆ ପ୍ରଭୃତି ଅକ୍ଷର ଶିଖାଉଥିଲେ । ଏହା ପରେ ବହି ପଢ଼ିବା କାମ ହେଉଥିଲା । କିଛି କିଛି ଅଙ୍କ ମଧ୍ୟ ଶିଖା ଯାଉଥିଲା । ସାଧାରଣ ହିସାବ ପତ୍ର ଶିଖିବା ପାଇଁ ମିଶାଣ, ଫେଡ଼ାଣ,

ଗୁଣନ ଓ ହରଣ ଶିଖିଗଲେ କାମ ଚଳି ଯାଉଥିଲା । ସେଥିପାଇଁ କୁହାଯାଉଥିଲା — "ହର ଗୁଣ ଫେଡ଼୍ ମିଶା, ଆଉ ସବୁ ପାଠ ଫସର ଫସା ।" ସେହିଭଳି ପିଲା ଅକ୍ଷର ଚିହ୍ନି ବହି ପଢ଼ି, ଛାନ୍ଦ ଚଉପଦୀ ବୋଲି ପାରିଲେ ଢେର ହୋଇଗଲା ବୋଲି ଲୋକେ ଭାବୁଥିଲେ ।

ଗୋପବନ୍ଧୁ ମଧ୍ୟ ନିଜ ବଡ଼ଭାଇଙ୍କ ସହିତ ମିଶି ପ୍ରଥମେ ଏହି ପାଠ ପଢ଼ିଲେ । ଅଳ୍ପ ଦିନରେ ଅକ୍ଷର ଚିହ୍ନି ବହି ପଢ଼ିପାରିଲେ । ଏବେ ଗାଁର ଅଶିକ୍ଷିତା ଝିଅ ବୋହୂମାନେ ତାଙ୍କୁ ଭାଗବତ ପଢ଼ି ଶୁଣାଇବାକୁ ବରାଦ କଲେ । ପ୍ରତିଦିନ ସଞ୍ଜବେଳେ ନିଜ କୁଳ ଦେବତା ବିନୋଦ ବିହାରୀଙ୍କ ନିକଟରେ ସେ ଭାଗବତ ପଢ଼ି ସମସ୍ତଙ୍କୁ ଶୁଣାଉଥିଲେ ।

ଓଡ଼ିଆ ଭାଷାରେ ଲେଖାଯାଇଥିବା ଭାଗବତ ମଧ୍ୟରୁ ଜଗନ୍ନାଥ ଦାସଙ୍କ ଲେଖାର ଆଦର ଥିଲା ବେଶି । ତାଙ୍କ ଭାଗବତକୁ ନବାକ୍ଷରୀ ଭାଗବତ ମଧ୍ୟ କୁହାଯାଏ । କାରଣ ଏଥିରେ ଥିବା ପ୍ରତି ପାଦର ଅକ୍ଷର ସଂଖ୍ୟା ଥିଲା ନଅ । ଏହାର ଭାଷା ସରଳ ହୋଇଥିବାରୁ ଲୋକେ ଏହାକୁ ସହଜରେ ବୁଝିପାରନ୍ତି । ପିଲାଦିନୁ ଗୋପବନ୍ଧୁ ଏହାକୁ ପଢ଼ି ଅନେକ ପଦ ମନେ ରଖିଥିଲେ । ବଡ଼ ହେଲା ପରେ କଥାବାର୍ତ୍ତାରେ ସବୁବେଳେ ସେ ଭାଗବତ ବାଣୀରୁ ଉଦାହରଣ ମାନ ଦେଉଥିଲେ ।

ଅବଧାନ ଚାହୁଁଥିଲେ ଗୋପବନ୍ଧୁ ଅଙ୍କରେ ପୋଖତ ହେଉ । ଭଲ ହିସାବ କିତାବ କରିପାରୁ । ସେତେବେଳେ ଭଲ ହିସାବ କିତାବ କରିପାରୁଥିବା ପିଲାଙ୍କୁ ବୁଦ୍ଧିଆ କୁହାଯାଉଥିଲା । ଗୋପବନ୍ଧୁଙ୍କ ଭାଗବତ ପଢ଼ାକୁ ସେ ପସନ୍ଦ କରୁ ନ ଥିଲେ । ଏହି ସମୟରେ ଗୋପବନ୍ଧୁ ଛୋଟ

ଛୋଟ କବିତା ଲେଖି ସାଙ୍ଗମାନଙ୍କୁ ଶୁଣାଉଥିଲେ । ଏଥିରେ ଅବଧାନ ବଡ଼ ଚିନ୍ତାରେ ପଡ଼ିଗଲେ । ପିଲାଟା ଖରାପ ହୋଇଗଲା ଯେ !

ଶେଷକୁ ଅବଧାନେ ଏକଥା ତାଙ୍କ ବାପା ଦୈତ୍ୟାରୀ ବାବୁଙ୍କ କାନକୁ ନେଲେ । ଏତେ ମାଡ଼ଗାଳି ଖାଇ ବି ପିଲାଟା ବାଟ ହୁଡୁଛି ବୋଲି ସଫେଇ ଦେଲେ । କିନ୍ତୁ ପୁଅର ଏ ଗୁଣ କଥା ଶୁଣି ବାପା ଖୁବ୍ ଖୁସି ହେଲେ । ସେ ଜାଣିଥିଲେ ମନରୁ ଫାନ୍ଦି ଗୀତ ଲେଖିବା ଏଡ଼େ ସହଜ କଥା ନୁହେଁ । ପୁଅର କବିତା ପଢ଼ି ସେ ଆହୁରି ଆହୁରି ଲେଖିବାକୁ ତା'କୁ ଉତ୍ସାହ ଦେଲେ ।

ଚାଟଶାଳୀ ପଢ଼ା ତ ସରିଲା । ଏତିକିରେ ପିଲା ଦିହିଙ୍କର ପାଠ ଶେଷ କରିଦେବାକୁ ଦୈତ୍ୟାରୀ ଚାହୁଁ ନ ଥିଲେ । ସେତେବେଳକୁ ନୂଆ ଢଙ୍ଗରେ ପାଠ ପଢ଼ିବା ଧାରା କେତେକ ଜାଗାରେ ଆରମ୍ଭ ହୋଇଥିଲା । ଏହାକୁ 'ଆଧୁନିକ ଶିକ୍ଷା' କୁହାଯାଉଥିଲା । ପୁଅମାନଙ୍କୁ ଏହି ପ୍ରକାର ପାଠ ପଢ଼ାଇବାକୁ ସେ ନିଜ ଗାଁରେ ଉଚ୍ଚ ପ୍ରାଥମିକ ସ୍କୁଲଟିଏ ବସାଇଲେ । ସେଇଠି ଭାଇ ନାରାୟଣଙ୍କ ସହିତ ଗୋପବନ୍ଧୁଙ୍କର ସ୍କୁଲ ପଢ଼ା ଆରମ୍ଭ ହେଲା ।

ଗାଁ ସ୍କୁଲରେ ପଢ଼ା ସରିଲା । ଏହାପରେ ଆହୁରି ପାଠ ପଢ଼ିବା ପାଇଁ ଦୁଇଭାଇ ରୂପଦେଇପୁର ଗାଁକୁ ଗଲେ । ସୁଆଣ୍ଡୋଠାରୁ ରୂପଦେଇପୁର ପ୍ରାୟ ଆଠ ନଅ କିଲୋମିଟର ଦୂର ହେବ । ପାଦରେ ଚାଲି ଚାଲି ସେମାନେ ସେଠାକୁ ଯାଉଥିଲେ । ସେହି ଗାଁରେ ଥିଲା

ଗୋଟିଏ ମଧ୍ୟ ଭର୍ଣ୍ଣାକୁଲାର ସ୍କୁଲ । ଆଜି କାଲି ଏଭଳି ସ୍କୁଲ ଉଠିଗଲାଣି । ଏଥିରେ ଆଜିକାଲିର ମାଇନର ସ୍କୁଲ ଭଳି ପାଠ ପଢ଼ା ଯାଉଥିଲା । କିନ୍ତୁ ଇଂରେଜୀ ବିଷୟ ପଢ଼ାଯାଉ ନଥିଲା ।

## ଏକାଥରକେ ଡବଲ ପାସ୍

ରୂପଦେଇପୁର ସ୍କୁଲରୁ ପାସ୍ କଲା ପରେ ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ । ସେଠାରେ ପ୍ରଥମେ ପ୍ରଥମେ ଇଂରାଜୀ ପାଠ ତାଙ୍କର ଭଲ ହେଉ ନଥିଲା । ସାଙ୍ଗ ପିଲାମାନଙ୍କ ଭଳି ସେ ଇଂରାଜୀ ଭଲ କହିପାରୁ ନ ଥିବାରୁ ତାଙ୍କୁ ଲାଜ ଲାଗିଲା । କିନ୍ତୁ ଏଥିରେ ସେ ଦବି ଗଲେ ନାହିଁ । ମନ ଲଗାଇ ଏମିତି ପଢ଼ିଲେ ଯେ, ସେବର୍ଷ ସେ ଏକାଥରକେ ଦୁଇବର୍ଷର ପାଠ ପଢ଼ିଦେଲେ । ତେଣୁ ତାଙ୍କର ଡବଲ ପାସ୍ ହେଲା । ସପ୍ତମ ଶ୍ରେଣୀରୁ ସେ ସେହି ବର୍ଷ ନବମ ଶ୍ରେଣୀକୁ ଉଠିଲେ ।

ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଲାବେଳେ ସେ ଖୁବ୍ ନାମ କଲେ । ସେତେବେଳେ ପୁରୀରେ ରାମଚନ୍ଦ୍ର ଦାସ ବୋଲି ଜଣେ ଜଣାଶୁଣା ଲୋକ ଥିଲେ । ସେ ଥିଲେ ଭାରି ପରୋପକାରୀ । ଗୋପବନ୍ଧୁଙ୍କ ବାପା ଦୈତ୍ୟାରୀଙ୍କ ଭଳି ରାମଚନ୍ଦ୍ର ମଧ୍ୟ ଜଣେ ମୁକ୍ତ୍ୟାର ଥିଲେ । ଚାହିଁଥିଲେ ସେ ବହୁ ପଇସା ରୋଜଗାର କରିଥାନ୍ତେ । ମାତ୍ର ସେ ତାହା ଚାହିଁ ନ ଥିଲେ । ଗରିବ ଦୁଃଖୀ ଲୋକଙ୍କ ଦୁଃଖ ଦେଖି ତାଙ୍କ ମନ ଅଥୟ ହୋଇ

ପଢୁଥିଲା । ପୁରୀରେ ରାମଚନ୍ଦ୍ର ଗୋପବନ୍ଧୁଙ୍କୁ ଲୋକଙ୍କ ସେବା କରିବାକୁ ବାଟ ଦେଖାଇଲେ ।

ସେତେବେଳେ ପୁରୀରେ ପ୍ରତିବର୍ଷ ହଇଜା ଲାଗୁଥିଲା । ରଥଯାତ୍ରା ବେଳେ ପୁରୀରେ ବହୁଲୋକ ଜମା ହୁଅନ୍ତି । କିନ୍ତୁ ଏତେ ଲୋକଙ୍କ ପିଇବା ପାଇଁ ଭଲ ପାଣି ମିଳେ ନାହିଁ । ପଚା ଶଢ଼ା ଖାଦ୍ୟ ଖାଇ ମଇଳା ପାଣି ପିଇବା ଦ୍ୱାରା ଲୋକଙ୍କୁ ହଇଜା ହୁଏ । ଯାତ୍ରୀମାନେ ତ କାହିଁ କେତେ ଦୂରରୁ ଆସିଥାନ୍ତି । ପୁଣି ହଇଜାରେ ପଡ଼ିଥିବା ଲୋକଟିର କେହି ଅତି ଆପଣାର ଲୋକ ନ ଥିଲେ କଥା ସରିଲା । ଅନ୍ୟ ଲୋକେ ରୋଗ ଭୟରେ ତାକୁ ଏକୁଟିଆ ଛାଡ଼ିଦେଇ ପଳାନ୍ତି । ବିଚରା ରୋଗୀଟି କଲବଲ ହୋଇ ରାସ୍ତା କଡ଼ରେ ପଡ଼ିମରେ । ତା'ମୁହଁରେ ପାଣି ମୁନ୍ଦିଏ ଦେବାକୁ କେହି ନଥାନ୍ତି । ମଲା ପରେ ବି ତା'ମଡ଼ା ରାସ୍ତା କଡ଼ରେ ପଡ଼ିଥାଏ ।

ରାମଚନ୍ଦ୍ର ସ୍କୁଲ ପିଲାମାନଙ୍କୁ ନେଇ ଅସହାୟ ହଇଜା ରୋଗୀଙ୍କ ସେବା କରନ୍ତି । ରାସ୍ତା କଡ଼ରୁ ମଡ଼ା ଉଠାଇ ସତ୍କାର କରନ୍ତି । ସ୍କୁଲରେ ପଢୁଥିଲାବେଳେ ଗୋପବନ୍ଧୁ ଆଗଭର ହୋଇ ରାମଚନ୍ଦ୍ରଙ୍କୁ ଏ କାମରେ ଖୁବ୍ ସାହାଯ୍ୟ କରୁଥିଲେ । ରାମଚନ୍ଦ୍ରଙ୍କ ପରୋପକାର ଓ ସେବା ଗୁଣ ଦେଖି ଗୋପବନ୍ଧୁ ତାଙ୍କୁ ମନେ ମନେ ଗୁରୁ କରି ନେଲେ । ତାଙ୍କରି ଉପଦେଶ ମାନି ସରକାରୀ ଚାକିରି ନ କରି ଦେଶ ସେବାରେ ଜୀବନ ବିତାଇଲେ ।

## କଲେଜ ପଢ଼ାରେ ବାଧା

ଅଠର ଶହ ଅନେଶତ ମସିହାରେ ଗୋପବନ୍ଧୁ ସ୍କୁଲ ପରୀକ୍ଷାରେ ପାସ୍ କଲେ । ସେତେବେଳେ ତାହାକୁ ଏନ୍ଟ୍ରାନ୍ସ ପରୀକ୍ଷା ବୋଲି କୁହାଯାଉଥିଲା । ପରେ ତାକୁ ମେଟ୍ରିକ ବୋଲି କୁହାଯାଉଥିଲା । ଏବେ ହାଇସ୍କୁଲ ପାସ୍ ବୋଲି କହୁଛନ୍ତି । ଅଧିକ ପଢ଼ିବା ପାଇଁ ସେ କଟକର ରେଭେନ୍ସା କଲେଜରେ ନାମ ଲେଖାଇଲେ । ସେତେବେଳେ ଏହି ରେଭେନ୍ସା କଲେଜ ଓଡ଼ିଶାରେ ଗୋଟିଏ ବୋଲି କଲେଜ ଥିଲା । ଏହି ସମୟରେ ତାଙ୍କ ପଢ଼ାରେ ଦୁଇଟି ବାଧା ଉପୁଜିଲା ।

ବାରବର୍ଷ ବୟସବେଳେ ଗୋପବନ୍ଧୁଙ୍କ ବାହାଘର ହୋଇଯାଇଥିଲା । ସେତେବେଳେ ପିଲାବେଳୁ ଝିଅ ପୁଅଙ୍କ ବାହାଘର କରିଦିଆଯାଉଥିଲା । ଏହାକୁ ବାଲ୍ୟ ବିବାହ କହନ୍ତି । ଏହାର ଖରାପ ଫଳ ଯୋଗୁଁ ସରକାର ନିୟମ କରି ଏହାକୁ ବନ୍ଦ କରି ଦେଇଛନ୍ତି । ଗୋପବନ୍ଧୁ କଲେଜରେ ପଢ଼ିବା ବେଳକୁ ତାଙ୍କ ସ୍ତ୍ରୀ ଘରଯୋଗ୍ୟା ହେଲେ । ସ୍ତ୍ରୀ ଘର ଯୋଗ୍ୟା ହୋଇ, ଘରକୁ ଆସିଲେ ସ୍ୱାମୀ ତାହାର ଭରଣ ପୋଷଣ ପାଇଁ ରୋଜଗାର କରି ଘରକୁ ଟଙ୍କା ପଇସା ଦେବା କଥା । ଏଥିପାଇଁ ଗୋପବନ୍ଧୁଙ୍କୁ ପାଠ ପଢ଼ାରେ ଡୋରି ବାନ୍ଧିବାକୁ ହୋଇଥାନ୍ତା । ପୁଣି ଏହି ସମୟରେ ବାପା ଦୈତ୍ୟାରୀଙ୍କର ବିୟୋଗ ହେଲା । ତେଣୁ ଗୋପବନ୍ଧୁଙ୍କୁ ତାଙ୍କ ପରିବାରର ଜମିବାଡ଼ି, ଭଲମନ୍ଦ ଦାୟିତ୍ୱ ବୁଝିବା କଥା ।

କିନ୍ତୁ ବଡ଼ ଭାଇ ନାରାୟଣ ସବୁ ସମ୍ଭାଳି ନେଲେ । ଗୋପବନ୍ଧୁଙ୍କୁ ଭିନ୍ନେ କରି ନ ଦେଇ ସେ ଘରର ସବୁ ଦାୟିତ୍ୱ ବୁଝିଲେ । ଗୋପବନ୍ଧୁଙ୍କ ପଢ଼ାରେ ଆଉ କୌଣସି ବାଧା ରହିଲା ନାହିଁ । ଏପରିକି ପରେ ମଲା ପର୍ଯ୍ୟନ୍ତ ସେ ଗୋପବନ୍ଧୁଙ୍କ ପରିବାରର ସବୁ ଦାୟିତ୍ୱ ବୁଝୁଥିଲେ । ସେଥିପାଇଁ ଗୋପବନ୍ଧୁ ଦେଶସେବା କରିବାକୁ ସମୟ ପାଇ ପାରୁଥିଲେ ।

ଉଣେଇଶ ଶହ ଏକ ମସିହାରେ ଗୋପବନ୍ଧୁ ଏଫ୍. ଏ. ପରୀକ୍ଷାରେ ପାସ୍ କଲେ । ଆଗେ କଲେଜ ପାଠର ପ୍ରଥମ ଦୁଇବର୍ଷକୁ ଏଫ.ଏ. କୁହାଯାଉଥିଲା । ପରେ ତାକୁ ଆଇ.ଏ. ଶ୍ରେଣୀ ବୋଲି କୁହାଗଲା । ଏହାପରେ ସେ ବି.ଏ. ପଢ଼ିଲେ । ୧୯୦୪ ମସିହାରେ ବି.ଏ. ପାସ୍ କଲେ । ସେହି ବର୍ଷ ସେ ଏକାଥରକେ ଏମ୍.ଏ. ଓ ଆଇନ୍ ପଢ଼ିବା ପାଇଁ କଲିକତା ଗଲେ । ପରେ ରାମଚନ୍ଦ୍ରଙ୍କ ପରାମର୍ଶ ଅନୁସାରେ ସେ କେବଳ ଆଇନ ବା ଓକିଲାତି ପାଠ ପଢ଼ିଲେ ।

## ପାଠ ପଢ଼ା ଶେଷରେ

ଆଇନ୍ ପରୀକ୍ଷାରେ ପାସ୍ କରି ଗୋପବନ୍ଧୁ ଓଡ଼ିଶାକୁ ଫେରି ଆସିଲେ । ସେତେବେଳେ ବାଲେଶ୍ୱର ଜିଲ୍ଲାର ନୀଳଗିରିଠାରେ ଗୋଟିଏ ହାଇସ୍କୁଲ କରିବାକୁ ଚେଷ୍ଟା ଚାଲିଥାଏ । ଏହି ସ୍କୁଲର ପ୍ରଧାନ ଶିକ୍ଷକ ହେବାକୁ ନୀଳଗିରି ରାଜା ଗୋପବନ୍ଧୁଙ୍କୁ ଡାକିଲେ । ମାତ୍ର ଗୋପବନ୍ଧୁ

ପ୍ରଥମେ ଏଥିପାଇଁ ନିଜର ପିଲାଦିନର ସାଙ୍ଗ ଉମାଚରଣ ଦାସଙ୍କୁ ବାଛିଲେ । ତାଙ୍କର ଆଉ ଜଣେ ପିଲାଦିନର ସାଙ୍ଗ ଆଚାର୍ଯ୍ୟ ହରିହର ସେଠାରେ ଦ୍ୱିତୀୟ ଶିକ୍ଷକ ହେଲେ । ପରେ ଉମାଚରଣ ଡେପୁଟି କଲେକ୍ଟର ହେବାରୁ ଗୋପବନ୍ଧୁ ସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ଏହି ସମୟରେ ତାଙ୍କ ସ୍ତ୍ରୀଙ୍କର ପରଲୋକ ହୋଇଗଲା ।

## ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା

ଓଡ଼ିଶାରୁ କେମିତି ଦାରିଦ୍ର୍ୟ, ଦୁଃଖ ଦୂର ହେବ, ଲୋକେ ସୁଖରେ ରହିବେ, ସେଥିପାଇଁ ଗୋପବନ୍ଧୁ ସବୁବେଳେ ଭାବୁଥିଲେ । ସେ ବୁଝିଥିଲେ ଯେ, ପାଠ ପଢ଼ା ଅଭାବରୁ ଲୋକେ ବହୁ କଥା ଜାଣିପାରୁନାହାନ୍ତି । ତାଙ୍କୁ ସେଥିପାଇଁ ଅନ୍ୟମାନେ ଶୋଷଣ କରୁଛନ୍ତି । ଶିକ୍ଷିତ ନ ହେଲା ଯାଏ, ଲୋକେ ସେମିତି ଗରିବ ହୋଇ ରହିଥିବେ । ତେଣୁ କଲେଜରେ ପାଠ ପଢ଼ିଲାବେଳୁ ଓଡ଼ିଶାରେ କିଭଳି ଶିକ୍ଷାର ବିସ୍ତାର ଘଟିପାରିବ ସେଥିପାଇଁ ସେ ଚିନ୍ତା କରୁଥିଲେ ।

ସେତେବେଳେ ଦକ୍ଷିଣ ଭାରତରେ 'ଦାକ୍ଷିଣାତ୍ୟ ଶିକ୍ଷା ସମିତି' ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ା ଯାଇଥିଲା । ଗୋପବନ୍ଧୁ ସେହି ଢାଞ୍ଚାରେ ଓଡ଼ିଶାରେ 'ସାର୍ବଜନୀନ ଶିକ୍ଷା ସଂଘ' ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ । କିନ୍ତୁ ଏହି ଅନୁଷ୍ଠାନ ଶିକ୍ଷା ପ୍ରସାର ପାଇଁ ବିଶେଷ କିଛି କାମ କରିପାରିଲା ନାହିଁ ।

ଓଡ଼ିଶାରେ କେମିତି ଜାତୀୟବାଦୀ ଶିକ୍ଷାର ପ୍ରସାର ହେବ ସେଇ କଥା ଗୋପବନ୍ଧୁ ସବୁବେଳେ ଭାବୁଥାଆନ୍ତି । ସେ ନିଜ ମନ କଥା ନୀଳକଣ୍ଠ ଓ ହରିହରଙ୍କ ପାଖରେ ପ୍ରକାଶ କଲେ । ଦିନେ ରାତିରେ ଭାର୍ଗବୀ ନଈ କୂଳରେ ତିନି ଜଣ ବସି ଶପଥ ନେଲେ – "ଆମେ ସରକାରୀ ଚାକିରି କରିବା ନାହିଁ । ଦେଶ ସେବା ପାଇଁ ଜୀବନ ଉତ୍ସର୍ଗ କରି ଦେବା । ଜନ୍ମ ହେଲା ବେଳେ ଦେଶକୁ ଯେଉଁ ଅବସ୍ଥାରେ ଦେଖିଥିଲେ, ମଲାବେଳକୁ ସେ ଦେଶ ଯେପରି ଅଧିକ ଉନ୍ନତି କରିଥାଏ, ତାହା ଦେଖି କରିଯିବା ।"

ଦେଶପ୍ରେମୀ ପାଠୁଆ ଲୋକ ନ ବାହାରିଲେ ଦେଶର ଉନ୍ନତି ହେବ କିପରି ? ସେତେବେଳେ ଯେଉଁମାନେ ସ୍କୁଲ କଲେଜରେ ପାଠ ପଢୁଥିଲେ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ଚାକିରି କରିବା, ନିଜେ ଟଙ୍କା ରୋଜଗାର କରି ସୁଖରେ ରହିବା । ଦେଶ କଥା ଭାବିବା ପାଇଁ ସେମାନଙ୍କ ଭିତରେ ପ୍ରେରଣା ନଥିଲା ।

ଗୋପବନ୍ଧୁ ଏଭଳି ଏକ ବିଦ୍ୟାଳୟ ବସାଇବାକୁ ଚାହୁଁଥିଲେ, ଯେଉଁଠି ପାଠ ପଢ଼ିଲେ ପିଲାଙ୍କ ଭିତରେ ମଣିଷ ପଣିଆର ବିକାଶ ହେବ । ଦେଶ ପାଇଁ କାମ କରିବା ଲାଗି ଉତ୍ସାହ ଆପେ ଆପେ ନିଜ ଭିତରେ ସୃଷ୍ଟି ହେବ । ପିଲାଦିନୁ ପାଠ ପଢ଼ାର ମୂଳଦୁଆ ଠିକ୍ ଥିଲେ, ବଡ଼ ଦିନକୁ ସେମାନେ ଆପେ ଆପେ ନିଜ କର୍ତ୍ତବ୍ୟ ସ୍ଥିର କରି ପାରିବେ ।

ଏହି ଆଦର୍ଶ ବିଦ୍ୟାଳୟ କେଉଁଠି ସ୍ଥାପନ କରାଯିବ, ଏଥିପାଇଁ ଉପଯୁକ୍ତ ସ୍ଥାନ ଖୋଜା ଚାଲିଲା । ସେତେବେଳେ ମଧୁସୂଦନ ରାଓ

ଓଡ଼ିଶାର ଶିକ୍ଷା ବିଭାଗରେ ଜଣେ କର୍ମକର୍ତ୍ତା ଥିଲେ । ତାଙ୍କ ପରାମର୍ଶ ନିଆଗଲା । ସେ ଏଥିପାଇଁ ସତ୍ୟବାଦୀକୁ ବାଛିଲେ ।

ସେତେବେଳେ ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ଗୋଟିଏ ଜଣାଶୁଣା ପବିତ୍ର ସ୍ଥାନ ଥିଲା । ଏଠାରେ ପ୍ରସିଦ୍ଧ 'ସାକ୍ଷୀ ଗୋପୀନାଥ'ଙ୍କ ମନ୍ଦିର । ରେଲ୍ ଷ୍ଟେସନଟିଏ ବି ଅଛି । ଏହି ସାକ୍ଷୀଗୋପାଳକୁ ଲାଗି ସତ୍ୟବାଦୀ । ବଉଳ ଓ ଛୁରିଅନା ଗଛ ପୂରି ରହିଛି । ଏହି ଜାଗାଟି ଗୋପବନ୍ଧୁଙ୍କ ମନକୁ ପାଇଲା ।

ଗୋପବନ୍ଧୁ ସତ୍ୟବାଦୀକୁ ବାଛିବାର କେତେ କାରଣ ଥିଲା । ପ୍ରଥମରେ ତ ଏଠିକାର ସୁନ୍ଦର ପରିବେଶରେ ସ୍କୁଲଟିଏ ବସାଇଲେ ଋଷି ଆଶ୍ରମ ଭଳି ଦେଖାଯିବ । ପିଲାମାନଙ୍କର ବି ଯିବା ଆସିବାର ସୁବିଧା ଅଛି । ବଡ଼ କଥା ହେଲା, ଏହାର ନିକଟବର୍ତ୍ତୀ ଗାଁ ଶ୍ରୀରାମଚନ୍ଦ୍ରପୁରରେ ଜଣେ ସମାଜ ସଂସ୍କାରକ ଜନ୍ମ ହୋଇଥିଲେ । ତାଙ୍କ ନାଁ ହରିହର ଦାସ । ସେତେବେଳେ ଆମ ଦେଶରେ ବହୁ ପ୍ରକାର କୁସଂସ୍କାର ଓ ଅନ୍ଧବିଶ୍ୱାସ ଥିଲା । ଏହା ଲୋକଙ୍କୁ ଭୁଲ୍ ବାଟରେ ପରିଚାଳିତ କରୁଥିଲା । ହରିହର ଏହାକୁ ଦୂର କରିବା ପାଇଁ ଚେଷ୍ଟା କରିଥିଲେ । ସେଥିପାଇଁ ତାଙ୍କୁ ବହୁ ବାଧାବିଘ୍ନ ସହିବାକୁ ହୋଇଥିଲା । ସମାଜର ବଡ଼ବଡ଼ିଆମାନେ ତାଙ୍କୁ ବହୁତ ଦୁଃଖ କଷ୍ଟ ଦେଇଥିଲେ । ତଥାପି ସେ ସମାଜରୁ ଏଭଳି ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବାକୁ ଉଦ୍ୟମ କରିଥିଲେ । ଗୋପବନ୍ଧୁ ବି ସେହି ଏକା କଥା ଚାହୁଁଥିଲେ ।

୧୯୦୯ ମସିହାରେ ସତ୍ୟବାଦୀରେ ଗୋପବନ୍ଧୁଙ୍କ ଉଦ୍ୟମରେ ପ୍ରଥମେ ମାଇନରସ୍କୁଲ ଖୋଲିଲା । ପରେ ୧୯୧୨ ମସିହାରେ ଏହା ଗୋଟିଏ ହାଇସ୍କୁଲରେ ପରିଣତ ହେଲା । ପଣ୍ଡିତ ନୀଳକଣ୍ଠ ଏହାର ପ୍ରଧାନ ଶିକ୍ଷକ ହେଲେ । ତାଙ୍କ ବ୍ୟତୀତ ପଣ୍ଡିତ ଗୋଦାବରୀଶ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ଏଠାରେ ଶିକ୍ଷକ ଭାବେ ଯୋଗ ଦେଲେ ।

ଖାଲି ପାଠ ପଢୁଆ ମଣିଷଟିଏ ତିଆରି କରିବା ତ ଏହାର ମୂଳ ଲକ୍ଷ୍ୟ ନଥିଲା । ସେଥିପାଇଁ ଏଠାରେ ଖେଳ କସରତ୍, ସମାଜ ସେବା, ବଗିଚା କାମ, ସାହିତ୍ୟ ଆଲୋଚନା ପ୍ରଭୃତି ବିଷୟରେ ମଧ୍ୟ ଶିକ୍ଷା ଦିଆଯାଉଥିଲା । ପିଲାମାନଙ୍କ ପାଇଁ ପାଠ ପଢ଼ା ଭାରି ସହଜ ଓ ଆନନ୍ଦ ଦାୟକ ଥିଲା । କିନ୍ତୁ ଆଶ୍ରମ ଭଳି ଏଠି ନିୟମ କାନୁନ୍ କଡ଼ା ଥିଲା । ପିଲାମାନେ ସମୟ ଜଗି ଚଳୁଥିଲେ । ସେହି ଅନୁସାରେ କାମ କରୁଥିଲେ ।

ଏଠାରେ ପିଲାମାନେ ବର୍ଷାଦିନ ଛଡ଼ା ଆଉ ସବୁଦିନେ ଗଛମୂଳରେ ଖୋଲା ଜାଗାରେ ବସି ପାଠ ପଢୁଥିଲେ । କେବଳ ବର୍ଷାଦିନେ ପଢ଼ିବା ପାଇଁ ଘର ତିଆରି ହୋଇଥିଲା । ଏହାଛଡ଼ା ହଷ୍ଟେଲ୍, ପାଠାଗାର ଓ ଶିକ୍ଷକମାନଙ୍କ ରହିବା ପାଇଁ କେତେଗୁଡ଼ିଏ ଘର ଥିଲା । ପ୍ରଥମେ ଏସବୁ ଘର ଗୁଡ଼ିକ ମାଟିରେ ତିଆରି ହୋଇ ଚାଳ ଛପର ହୋଇଥିଲା । କିନ୍ତୁ ସେହିସବୁ ଘରକୁ ଥରେ ଦୁଷ୍ଟ ଲୋକମାନେ ନିଆଁ

ଲଗାଇ ପୋଡ଼ି ଦେବାରୁ ଚାଳ ଘର ବଦଳରେ ପକ୍କା ଘର ତିଆରି ହେଲା ।

## ଘର ପୋଡ଼ିଲା କିଏ ?

ଏହି ସବୁ ଘର କାହିଁକି ପୋଡ଼ିଲା, ତା'ର କାରଣ ରହିଛି । ସତ୍ୟବାଦୀ ଅଞ୍ଚଳ ଚାରିପଟେ ବ୍ରାହ୍ମଣ ବସତି । ସେତେବେଳେ ଏଠାରେ ବାସ କରୁଥିବା ବ୍ରାହ୍ମଣମାନଙ୍କ ଭିତରେ ବହୁତ ଅନ୍ଧବିଶ୍ୱାସ ଓ କୁସଂସ୍କାର ଥିଲା । ହରିହରଙ୍କ ଚେଷ୍ଟା ସତ୍ତ୍ୱେ ସେମାନଙ୍କ ମନ ବିଶେଷ କିଛି ବଦଳି ନଥିଲା । ଗୋପବନ୍ଧୁ ହାଇସ୍କୁଲ ବସାଇ ଏହାକୁ ଦୂର କରିବାକୁ ଚାହିଁଲେ । ସ୍କୁଲ ହଷ୍ଟେଲରେ ଏକା ସାଙ୍ଗରେ ବସି ଛାତ୍ରମାନେ ଖାଇଲେ । ଜାତି-ଅଜାତି ବାଛ ବିଚାର ରହିଲା ନାହିଁ । ଏଥିରେ ବ୍ରାହ୍ମଣମାନେ ରାଗିଗଲେ । ପୁଣି ସେତେବେଳେ ସ୍କୁଲର ଶିକ୍ଷକମାନେ ସମସ୍ତେ ବ୍ରାହ୍ମଣ ଥିଲେ ମଧ୍ୟ ବ୍ରାହ୍ମଣ ସମାଜରେ ଥିବା କୁସଂସ୍କାରକୁ ମାନିଲେ ନାହିଁ । ଶାସନୀ ବ୍ରାହ୍ମଣମାନେ ଏଥିରେ ଆହୁରି ଚିଡ଼ିଗଲେ । ବିଶେଷ କରି ପଣ୍ଡିତ ନୀଳକଣ୍ଠ ବ୍ରାହ୍ମଣମାନଙ୍କ ମନା ନମାନି ନିଶ ରଖିଲେ । ଲେଖା ଲେଖି କରି ଏଭଳି କୁସଂସ୍କାର ଦୂର କରିବା ପାଇଁ ଶିକ୍ଷିତ ଯୁବକମାନଙ୍କୁ ଡାକରା ଦେଲେ ।

ଶାସନୀ ବ୍ରାହ୍ମଣମାନେ କି ଆଉ ଥୟ ପଡ଼ନ୍ତି ! ସେମାନେ ଭାବିଲେ ସତ୍ୟବାଦୀ ହାଇସ୍କୁଲ କିଛି ଦିନ ଚାଲିଲେ ଆଉ ଧର୍ମ ରହିବ

ନାହିଁ । ଏହି ଭୟରେ ଦିନେ ରାତି ଅନ୍ଧାର ଭିତରେ ସେମାନେ ସ୍କୁଲର କେତେକ ଘରେ ନିଆଁ ଲଗାଇ ଦେଲେ । ସ୍କୁଲର ବହୁତ ମୂଲ୍ୟବାନ ଜିନିଷ ପୋଡ଼ିଗଲା । ଶହ ଶହ ବହି ବି ପୋଡ଼ିଗଲା ।

ଯାହା ହେଉ, ଏଥିରେ ଗୋପବନ୍ଧୁ ବା ବନବିଦ୍ୟାଳୟର ଶିକ୍ଷକମାନେ ଭାଙ୍ଗି ପଡ଼ିଲେ ନାହିଁ । ନୂଆ ବଳ ଓ ଉତ୍ସାହ ନେଇ ସେମାନେ ଲାଗି ପଡ଼ିଲେ । ଚାନ୍ଦା ଭେଦା କରି ସେମାନେ ସ୍କୁଲ କାମ ଚାଲିବା ପାଇଁ କେତୋଟି ନୂଆ ଘର ତିଆରି କରିଦେଲେ ।

ବନବିଦ୍ୟାଳୟର ସୁନାମ ଚାରିଆଡ଼େ ବ୍ୟାପିଗଲା । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଛାତ୍ରମାନେ ଆସି ଏଠାରେ ପଢ଼ିଲେ । ଓଡ଼ିଶା ଓ ଓଡ଼ିଶା ବାହାରର ବହୁ ବଡ଼ ଲୋକ ଆସି ଏହି ସ୍କୁଲ ଦେଖି ବହୁତ ଖୁସି ହେଲେ । ପ୍ରଶଂସା ବି କଲେ । ସେମାନଙ୍କ ଭିତରେ ଥିଲେ ଉତ୍କଳ ଗୌରବ ମଧୁସୂଦନ, ବ୍ୟାସକବି ଫକୀର ମୋହନ, ସ୍ୱଭାବ କବି ଗଙ୍ଗାଧର ମେହେର । ଆହୁରି ଥିଲେ ମହାତ୍ମା ଗାନ୍ଧି, ଠକ୍କର ବାପା ପ୍ରଭୃତି । ଗୋରାସାହେବମାନେ ମଧ୍ୟ ଏଠାକାର ପରିବେଶ ଓ ପାଠ ପଢ଼ା ଦେଖି ଖୁସି ହୋଇଗଲେ । ଜଣେ ସାହେବ ତ ଏଭଳି ସ୍କୁଲ ତାଙ୍କ ଦେଶରେ ଖୋଲିବା ପାଇଁ ସରକାରଙ୍କୁ ଲେଖିଥିଲେ ।

ଗୋପବନ୍ଧୁ ପରେ ଦେଶର ସ୍ୱାଧୀନତା ପାଇଁ ବେଶି ସମୟ ଦେବାରୁ ସ୍କୁଲ କଥା ଦେଖି ପାରିଲେ ନାହିଁ । ପ୍ରଥମ ଅବସ୍ଥାରେ ଶିକ୍ଷକ ଥିବା ନୀଳକଣ୍ଠ, ଗୋଦାବରୀଶ, ହରିହର ଓ କୃପାସିନ୍ଧୁ ପ୍ରଭୃତି ମଧ୍ୟ ଦେଶ ସେବାରେ ଲାଗିଗଲେ । ଫଳରେ ସ୍କୁଲ ଆଉ ପୂର୍ବ ଭଳି ଚାଲି

ପାରିଲା ନାହିଁ । କେତେ ବର୍ଷ ଯେନ ତେନ ପ୍ରକାରେଣ ଚାଲି ଶେଷକୁ ଏହା ବନ୍ଦ ହୋଇଗଲା । କିନ୍ତୁ ଅଳ୍ପଦିନ ପାଇଁ ହେଲେ ବି ସତ୍ୟବାଦୀ ବନ ବିଦ୍ୟାଳୟ ସାରା ଭାରତରେ ଚହଳ ପକାଇ ଦେଇଥିଲା ।

## ମୟୂରଭଞ୍ଜରେ ଓକିଲାତି

ଏହାପୂର୍ବରୁ ଗୋପବନ୍ଧୁଙ୍କୁ ମୟୂରଭଞ୍ଜ ମହାରାଜାଙ୍କ ପାଖରୁ ଡାକରା ଆସିଥିଲା । ସେତେବେଳେ ଓଡ଼ିଶାର ଗଡ଼ଜାତମାନଙ୍କରେ ରାଜାମାନେ ଶାସନ କରୁଥିଲେ । କେତେକ ଗଡ଼ଜାତର ରାଜାମାନେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । କେବଳ ନିଜେ ସୁଖରେ ରହିବା ପାଇଁ ପ୍ରଜାମାନଙ୍କୁ ଶୋଷୁଥିଲେ । ସେମାନଙ୍କୁ ବେଠି ଖଟାଉଥିଲେ । ତାଙ୍କ ସୁଖ ଦୁଃଖ କଥା ଆଦୌ ବୁଝୁ ନ ଥିଲେ ।

ମାତ୍ର ମୟୂରଭଞ୍ଜ କଥା ଥିଲା ନିଆରା । ସେଠାରେ ରାଜା ଥାଆନ୍ତି ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ । ଲୋକଙ୍କ ସେବା ତାଙ୍କ ପାଇଁ ବଡ଼ କଥା ଥିଲା । ସେ ମୟୂରଭଞ୍ଜକୁ ଗୋଟିଏ ଆଦର୍ଶ ରାଜ୍ୟ କରି ଗଢ଼ିବାକୁ ଚାହୁଁଥିଲେ । ଚାରିଆଡୁ ବଡ଼ ବଡ଼ ପଣ୍ଡିତ, ଗୁଣୀ ଲୋକଙ୍କୁ ଡକାଇ ନିଜ ରାଜ ସଭାରେ ରଖୁଥିଲେ ।

ମୟୂରଭଞ୍ଜର ମହାରାଜା ଗୋପବନ୍ଧୁଙ୍କ ସୁଗୁଣ  କଥା ଜାଣି, ତାଙ୍କୁ ନିଜ ଦରବାରକୁ ଡକାଇନେଇଥିଲେ । ସେଠାରେ ତାଙ୍କୁ ସରକାରୀ ଓକିଲ ବି କରିଥିଲେ । ଗୋପବନ୍ଧୁ ଏହି ଚାକିରିରେ ରହିଥିଲେ ଢେର

ପଇସା କମାଇ ପାରିଥାନ୍ତେ, କିନ୍ତୁ ସେ ଚାକିରିରେ ବାନ୍ଧି ହୋଇ ରହିପାରିଲେ ନାହିଁ ।

## ଗରିବଙ୍କ ସେବା ପାଇଁ ଚାକିରି ଛାଡ଼ିଲେ

୧୯୦୬ ମସିହାର କଥା । ସେହି ବର୍ଷ ଅଗଷ୍ଟ ମାସରେ ଭାରି ବର୍ଷା ହେଲା । ବ୍ରାହ୍ମଣୀ, ବୈତରଣୀ ଓ ଖରସ୍ରୁଆଁ ନଈରେ ପ୍ରବଳ ବନ୍ୟା ଆସିଲା । ଏଥିରେ ବହୁ ସଂଖ୍ୟାରେ ଘର ଭାଙ୍ଗିଗଲା । ଅଗଣତି ମଣିଷ ମଲେ । ବନ୍ୟାପୀଡ଼ିତ ଲୋକଙ୍କ ଦୁଃଖ କଥା ଶୁଣି ସେ ଥୟ ଧରି ରହି ପାରିଲେ ନାହିଁ । ଉଚ୍ଚ ସରକାରୀ ପଦ ଓ ଅର୍ଥ ଉପାର୍ଜନ ତାଙ୍କ ଆଖିରେ ତୁଚ୍ଛ ମନେ ହେଲା । ସେ ଚାକିରି ଛାଡ଼ି ଦଉଡ଼ି ଆସିଲେ ଦୁଃଖୀ ଲୋକଙ୍କ ସେବା କରିବାକୁ ।

କଟକ କଲେଜରେ ପଢୁଥିବା ବେଳୁଁ ସେ ବନ୍ୟାଞ୍ଚଳରେ ବୁଲି ବୁଲି ଲୋକଙ୍କ ସେବା କରିବା କାମ ଆରମ୍ଭ କରିଥିଲେ । କେଉଁଠି ବନ୍ୟା ହୋଇଛି ଶୁଣିଲେ ସେ ତାଙ୍କର ଅନ୍ୟ ସବୁ କାମ ପଛକୁ ପକାଇ ଦେଇ ସେଠାକୁ ଦୌଡ଼ି ଯାଉଥିଲେ ।

ବନ୍ୟାଞ୍ଚଳରେ ଦୁଃଖ ଦୁର୍ଦ୍ଦଶା ଓ ବିପଦରେ ପଡ଼ିଥିବା ଲୋକମାନଙ୍କ ସେବା ପାଇଁ ସେ କଲେଜ ପଢୁଆ ଯୁବକମାନଙ୍କୁ ନେଇ ସ୍ୱେଚ୍ଛାସେବକ ବାହିନୀଟିଏ ଗଢ଼ିଥିଲେ ।

ସେ ବିଭିନ୍ନ ଖବର କାଗଜକୁ ବନ୍ୟାଞ୍ଚଳର କରୁଣ ବିବରଣୀ ସଂଗ୍ରହ କରି ପଠାଉଥିଲେ । ସେଗୁଡ଼ିକ ଛପା ଗଲା ପରେ ଓଡ଼ିଶା ବାହାରର ଲୋକେ ଓଡ଼ିଆ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା କଥା ଜାଣୁଥିଲେ । ଏହି ଲୋକଙ୍କୁ ସାହାଯ୍ୟ କରିବା ପାଇଁ ବାହାରର ଧନୀ ଲୋକେ ରିଲିଫ ପଠାଉଥିଲେ ।

ବନ୍ୟା ଓ ମରୁଡ଼ିରୁ ଓଡ଼ିଶାବାସୀଙ୍କୁ କିଭଳି ରକ୍ଷା କରିବେ ଏହି ଚିନ୍ତା ଗୋପବନ୍ଧୁଙ୍କ ମନକୁ ସବୁବେଳେ ଘାରୁଥିଲା । ୧୯୦୮ ମସିହାରେ ପୁରୀଠାରେ ଉତ୍କଳ ସମ୍ମିଳନୀ ବସିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସେତେବେଳେ ଅନ୍ୟ ରାଜ୍ୟ ସହିତ ଯୋଡ଼ି ହୋଇଥାଏ । ସେହି ବିଚ୍ଛିନ୍ନାଞ୍ଚଳକୁ ମିଶାଇ ଅଲଗା ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏହି ସମ୍ମିଳନୀ ବସିଥିଲା । ଗୋପବନ୍ଧୁ ଏଥିରେ ଯୋଗ ଦେଇ ଲୋକେ ବଢ଼ିବେଳେ ଭୋଗୁଥିବା ଦୁଃଖ କଷ୍ଟ ସଂପର୍କରେ ବୁଝାଇଲେ । ଏହି ବିପଦରୁ ଲୋକଙ୍କୁ ରକ୍ଷା କରିବା ବଡ଼ କାମ ବୋଲି ସମସ୍ତେ ବୁଝିଗଲେ । ଗୋଟିଏ କମିଟି ଗଢ଼ାଗଲା । ଏହି କମିଟି ଓଡ଼ିଶା ବାସୀଙ୍କର ଏଭଳି ଦୁଃଖ ଦୂର କରିବା ପାଇଁ କି କି କାମ କରାଯିବା କଥା ତାହା ସରକାରଙ୍କୁ ଜଣାଇଲେ ।

ଗୋପବନ୍ଧୁ ୧୯୦୭ ମସିହାରେ ବିହାର ଓଡ଼ିଶା ବିଧାନ ପରିଷଦର ସଭ୍ୟ ହେଲେ । ସେତେବେଳେ ଓଡ଼ିଶା ବିହାର ସହିତ ମିଶି ରହିଥାଏ । ସେଠାରେ ମଧ୍ୟ ବନ୍ୟା ଓ ଦୁର୍ଭିକ୍ଷ ଦାଉରୁ ଓଡ଼ିଶାର ଗରିବ ଜନସାଧାରଣଙ୍କୁ ବଞ୍ଚାଇବା ପାଇଁ ସେ ଦାବି କଲେ ।

୧୯୨୦ ମସିହାର କଥା । ସେ ବର୍ଷ ଭଲ ବର୍ଷା ନ ହେବାରୁ ପୁରୀ ଜିଲ୍ଲାରେ ଦୁର୍ଭିକ୍ଷ ପଡ଼ିଲା । ଲୋକେ ଖାଇବାକୁ ନ ପାଇ ଛଟ ପଟ ହେଲେ । ଶହ ଶହ ଲୋକ ପୋକ ମାଛି ଭଳି ମଲେ । ବିଲରେ ଧାନ ମରିଯିବାରୁ ଲୋକେ ଗଛରୁ ପତ୍ର ଆଣି ସିଝାଇ ଖାଇଲେ । ଗୋପବନ୍ଧୁ ବିଧାନ ପରିଷଦରେ ଏକଥା ପ୍ରକାଶ କରିବାରୁ ସେଠାରେ ଚହଳ ପଡ଼ିଗଲା । ତାଙ୍କ କଥା ସତ କି ମିଛ ପରଖି ଦେଖିବାକୁ ଇଂରେଜ ସରକାର ଜଣେ ଗୋରା ସାହେବଙ୍କୁ ପଠାଇଲେ । ତାଙ୍କ ନାଁ ଗ୍ଲୁନିଂ । ସେ ମଟର ଚଢ଼ି ଆସିଲେ । ଗାଁ ଗହଳକୁ ବାଟ ଘାଟ ତ ନ ଥାଏ । ପକ୍କା ସଡ଼କ ଉପରେ କେବଳ ତାଙ୍କ ଗାଡ଼ି ଚାଲିଲା । ରାସ୍ତାକଡ଼ ନାଳକୁ ଲାଗି ବାଲୁଙ୍ଗା ଗଛ ହୋଇଥାଏ । କେତେକ ଗରିବ ଘରର ସ୍ତ୍ରୀ ଲୋକେ ବାଲୁଙ୍ଗା ଧାନ ଗୋଟାଉଥାନ୍ତି । ଗ୍ଲୁନିଂ ସାହେବ ସେମାନଙ୍କୁ ଦେଖିଲେ । ସେ ତ ଧାନ ଆଉ ବାଲୁଙ୍ଗାର ଭେଦ ଜାଣି ନାହାନ୍ତି । ନାଳ କୂଳରେ ବଢ଼ିଥିବା ବାଲୁଙ୍ଗା ଗଛକୁ ଧାନ ବୋଲି ଭାବି ସେ ସରକାରଙ୍କୁ କହିଲେ ଯେ, ଗୋପବନ୍ଧୁ ମିଛ କହୁଛନ୍ତି । ଧାନ ଫସଲ ଭଲ ହୋଇଛି । ଗରିବ ସ୍ତ୍ରୀ ଲୋକମାନେ ପିନ୍ଧିଥିବା ପିତଳ ଗହଣାକୁ ସୁନା ଗହଣା ଭାବି ଲୋକେ ସୁଖରେ ଅଛନ୍ତି ବୋଲି ବି ସେ ମତ ଦେଇଥିଲେ ।

ଏକଥା ଶୁଣି ଗୋପବନ୍ଧୁ ରାଗିଗଲେ । ସେ ରାଗିଲେ କାନ୍ଦି ପକାନ୍ତି । ତାଙ୍କ ଆଖିରୁ ଝର ଝର ଲୁହ ବୋହି ଯାଉଥାଏ । ଗାମୁଛାରେ ବାଲୁଙ୍ଗା ଧାନ ଓ ମୁଠି ଶାଗ ନେଇ ସେ ବିଧାନ ପରିଷଦର ବିଭିନ୍ନ ସଭ୍ୟଙ୍କୁ ଦେଖାଇଲେ । ତାଙ୍କ କାନ୍ଦଣା ଓ ପ୍ରମାଣ ଦେଖି ସରକାରଙ୍କ

ବଡ଼ କର୍ମଚାରୀ ଗ୍ଲୁନିଂ ସାହେବ ଦେଇଥିବା ରିପୋର୍ଟ ମିଛ ବୋଲି ଜାଣିଲେ ।

ଶେଷକୁ ନିଜେ ଛୋଟ ଲାଟ ଏହି ମରୁଡ଼ି ଅଞ୍ଚଳ ବୁଲିବାକୁ ଆସିଲେ । ତାଙ୍କ ଆସିବା ଖବର ଗୋପବନ୍ଧୁଙ୍କୁ ନ ଦିଆଯିବା ପାଇଁ ଗ୍ଲୁନିଂ ସାହେବ ଚକ୍ରାନ୍ତ କଲେ । କିନ୍ତୁ ନିଜେ ଛୋଟ ଲାଟ ଗୋପବନ୍ଧୁଙ୍କୁ ସାଙ୍ଗରେ ନେଇ ଗାଁ ଗହଳିରେ ବୁଲିଲେ । ଲୋକଙ୍କ ପ୍ରକୃତ ଅଭାବ ଓ ଦୁଃଖ ଦେଖି ସେ ମନ ଦୁଃଖ କଲେ । ତାଙ୍କ ତଳ ଅଫିସର୍ ଭୁଲ୍ ରିପୋର୍ଟ ଦେଇଥିବାରୁ ସେ ଗୋପବନ୍ଧୁଙ୍କ ନିକଟରେ କ୍ଷମା ମାଗିଲେ ।

ଖାଲି ବଢ଼ି ମରୁଡ଼ି ବେଳେ ଲୋକଙ୍କ ସେବା କରି ଗୋପବନ୍ଧୁଙ୍କ କାମ ସରିନଥିଲା । ସେତେବେଳେ ଆମ ଓଡ଼ିଶା ରାଇଜ ଖଣ୍ଡ ଖଣ୍ଡ ହୋଇ ଅନ୍ୟ ପ୍ରଦେଶ ସହିତ ମିଶି ରହିଥିଲା । ଓଡ଼ିଶା ବୋଲି କିଛି ଗୋଟେ ଅଲଗା ରାଜ୍ୟ ନ ଥିଲା । ଫଳରେ ଓଡ଼ିଆ ଲୋକେ ଭାରି ହୀନିମାନରେ କାଳ କାଟୁଥିଲେ । ସେମାନଙ୍କୁ ନିଜ ଭାଷାରେ ପାଠ ପଢ଼ିବା ପାଇଁ ସୁଯୋଗ ମିଳୁ ନ ଥିଲା । ଫଳରେ ଓଡ଼ିଆମାନେ ବେଶି ସଂଖ୍ୟାରେ ସରକାରୀ ଚାକିରି କରି ପାରୁ ନ ଥିଲେ । ଅନ୍ୟ ଭାଷାଭାଷୀ ଲୋକେ ଓଡ଼ିଆମାନଙ୍କ ଉପରେ ହାକିମାତି କରୁଥିଲେ ।

ବଙ୍ଗ, ବିହାର ଓ ମାନ୍ଦ୍ରାଜ ସହିତ ମିଶି ରହିଥିବା ଓଡ଼ିଆ ଅଞ୍ଚଳକୁ ମିଶାଇ ଗୋଟିଏ ଅଲଗା ଓଡ଼ିଶା ପ୍ରଦେଶ ଗଠନ ପାଇଁ କେତେକ ନେତା ଦାବି କଲେ । ଗୋପବନ୍ଧୁଙ୍କ ଗୁରୁ ମୁକ୍ତ୍ୟାର ରାମଚନ୍ଦ୍ର ଦାସ, ଓଡ଼ିଶାର ପ୍ରଥମ ଓକିଲ ମଧୁବାବୁ, କବି ଗଙ୍ଗାଧର ମେହେର, ଫକୀର

ମୋହନ ସେନାପତି, ମୟୂରଭଞ୍ଜର ମହାରାଜା, ପାରଳା ମହାରାଜା ଏମିତି କେତେ ବଡ଼ ବଡ଼ ଲୋକେ ଏଥିପାଇଁ ଚେଷ୍ଟା କଲେ । ଏକାଠି କାମ କରିବା ପାଇଁ ସେମାନେ ୧୯୦୩ ମସିହାରେ ଗୋଟିଏ ସଂଗଠନ ଆରମ୍ଭ କଲେ । ତା' ନାମ ରଖିଲେ ''ଉତ୍କଳ ସମ୍ମିଳନୀ'' ।

ଗୋପବନ୍ଧୁ ମୂଳରୁ ଏହି ସଂଗଠନରେ ମିଶି କାମ କଲେ । ନିଜେ ନିଜେ ମଧ୍ୟ ସିଂହ ଭୂମି, ଜାମ୍‌ସେଦ୍‌ପୁର ଓ କଲିକତା ଆଦି ସ୍ଥାନକୁ ଗଲେ । ସେଠାରେ ବହୁତ ଓଡ଼ିଆ ରହୁଥିଲେ । କିନ୍ତୁ ସେମାନଙ୍କୁ ସେଠାକାର ଅଣଓଡ଼ିଆ ଲୋକେ ପଶୁ ଭଳି ବ୍ୟବହାର କରୁଥିଲେ । ଓଡ଼ିଆମାନେ କୁଲି ହେବା ପାଇଁ ଜନମ ହୋଇଛନ୍ତି ବୋଲି ଅଣଓଡ଼ିଆମାନେ ଭାବୁଥିଲେ । ଗୋପବନ୍ଧୁ ସେଠାକାର ଓଡ଼ିଆମାନଙ୍କୁ ଏକଜୁଟ କଲେ । ଅଣଓଡ଼ିଆମାନଙ୍କୁ ମଧ୍ୟ ଓଡ଼ିଆ ଜାତିର ବୀର ପଣିଆ ଓ ସାହସ କଥା ବୁଝାଇଲେ । ସେହି ସବୁ ଅଞ୍ଚଳରେ ଓଡ଼ିଆମାନଙ୍କ ମାନ ମହତ ବଢ଼ିଲା ।

୧୯୧୯ ମସିହାରେ ଗୋପବନ୍ଧୁ ଉତ୍କଳ ସମ୍ମିଳନୀର ସଭାପତି ହେଲେ । ଓଡ଼ିଆଙ୍କ ମହତ ବଢ଼ାଇବା ପାଇଁ ସେ ଆଉ ପାଦେ ଚିନ୍ତା କଲେ । ଓଡ଼ିଆମାନେ ଯଦି ଖାଲି ତାଙ୍କ ଦାବି କରନ୍ତି ତେବେ ଅନ୍ୟମାନେ ସେମାନଙ୍କୁ ସ୍ୱାର୍ଥପର ବୋଲି ଭାବିବେ । ତେଣୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ମିଶାଇ ନିଆରା ଓଡ଼ିଶା ପ୍ରଦେଶ ଗଠନ ଦାବି ସହିତ ଭାରତର ସ୍ୱାଧୀନତା ଲାଗି ମଧ୍ୟ ସେ ଦାବି କଲେ ।

ସେ କହିଲେ – ଓଡ଼ିଆ ଜାତିର ଭାବନା ବଡ଼ । ସେ ଖାଲି ନିଜ କଥା ଭାବେ ନାହିଁ । ତା' ରାଜ୍ୟର ବଡ଼ ନଈର ନାମ ମହାନଦୀ । ସେହିଭଳି ସମୁଦ୍ରର ନାମ ମହୋଦଧି । ଠାକୁରଙ୍କ ନାଁ ଜଗନ୍ନାଥ । ଗଛର ନାଁ କଳ୍ପବଟ । ଏମିତିକି ମଶାଣିର ନାଁ ସ୍ୱର୍ଗଦ୍ୱାର । ଓଡ଼ିଆ ଜାତି ଛୋଟ କଥା ଛାଡ଼ି ବଡ଼ ବଡ଼ କଥା ଚିନ୍ତା କରେ । ସେ ଖାଲି ନିଜ କଥା ଭାବି ଅଟକି ଯାଏ ନାହିଁ । ଅନ୍ୟମାନଙ୍କ କଥା ଚିନ୍ତା କରେ ।

ତେଣୁ ଓଡ଼ିଆ ଜାତିର ଦାବିକୁ ଗୋପବନ୍ଧୁ ସାରା ଭାରତର ଦାବି ସହିତ ମିଶାଇଦେଲେ । ତାଙ୍କ ଚେଷ୍ଟାରୁ ଭାରତୀୟ ଜାତୀୟ କଂଗ୍ରେସରେ ଦାବି ହେଲା ଯେ, ଅଲଗା ଅଲଗା ଭାଷା କହୁଥିବା ଲୋକଙ୍କ ପାଇଁ ଅଲଗା ଅଲଗା ରାଜ୍ୟ ଗଢ଼ା ହେଉ । ଏହି ସବୁ ରାଜ୍ୟ 'ଭାରତ ବର୍ଷ'ର ଗୋଟିଏ ଗୋଟିଏ ଅଙ୍ଗ । ଆମ ଦେହର କୌଣସି ଗୋଟିଏ ଅଙ୍ଗ ହାନି ହେଲେ ସାରା ଦେହ ଦୁର୍ବଳ ହୋଇଯାଏ । ଭାରତ ବର୍ଷର ଅବସ୍ଥା ଠିକ୍ ସେହିପରି । ସେଥିପାଇଁ କୌଣସି ଗୋଟିଏ ଭାଷାର ଲୋକେ ଯେପରି ଅବହେଳିତ ହୋଇ ନ ରହନ୍ତି, ସେଥିପାଇଁ କଂଗ୍ରେସ କମିଟିରେ ବିଚାର ବିମର୍ଷ ହେଲା ।

## ଦେଶ ସ୍ୱାଧୀନତା ପାଇଁ ଲଢ଼େଇ

ସେତେବେଳେ ଭାରତବର୍ଷରୁ ଇଂରେଜ ଶାସକମାନଙ୍କୁ ହଟାଇ ଆମ ନିଜ ଶାସନ ଚଳାଇବା ପାଇଁ କଂଗ୍ରେସ ଲଢ଼େଇ ଚଳାଇଥାଏ ।

ମହାତ୍ମା ଗାନ୍ଧି ଏ ଲଢ଼େଇରେ ନେତା ଥାନ୍ତି । ସଂପୂର୍ଣ୍ଣ ଅହିଂସା ଉପାୟରେ ଏ ଲଢ଼େଇ ଚାଲୁଥାଏ ।

ଗୋପବନ୍ଧୁ ଏହି ଲଢ଼େଇରେ ମିଶିଲେ । ଦେଶରେ ସ୍ୱରାଜ୍ୟ ଆଣିବା ପାଇଁ ଲୋକଙ୍କୁ ତତାଇଲେ, ମତାଇଲେ ।

ଗୋପବନ୍ଧୁ ଓଡ଼ିଶା ରାଜ୍ୟ କଂଗ୍ରେସର ସଭାପତି ହେଲେ । ଗାନ୍ଧି ଓ କଂଗ୍ରେସର ଡାକରା ଲୋକଙ୍କ ପାଖରେ ପହଞ୍ଚାଇବା ପାଇଁ ସେ ଓଡ଼ିଶାର ବିଭିନ୍ନ ସ୍ଥାନରେ ବୁଲି ବୁଲି ଭାଷଣ ଦେଲେ । ତାଙ୍କ ଭାଷଣ କଡ଼ା ନ ଥିଲା । କିନ୍ତୁ ଲୋକଙ୍କ ହୃଦୟକୁ ସହଜରେ ଛୁଇଁ ପାରୁଥିଲା । ଲୋକେ ତାଙ୍କ ଭାଷଣ ଶୁଣି ଦେଶ ସେବା ପାଇଁ ଉଦ୍‌ବୁଦ୍ଧ ହେଉଥିଲେ । ବିଦେଶୀ ସରକାରଙ୍କ କାମରେ ଅସହଯୋଗ କରିବା, ବିଦେଶୀ ଜିନିଷକୁ ନ କିଣିବା ପ୍ରଭୃତି କାମ ପାଇଁ ସେ ଲୋକଙ୍କୁ ଡାକରା ଦେଉଥିଲେ । ଲୋକେ ତାଙ୍କ କଥା ମାନି ଆନ୍ଦୋଳନ କଲେ । ଏ ଆନ୍ଦୋଳନକୁ ଇଂରେଜ ସରକାର ସହଜରେ ଦବାଇ ପାରିଲେ ନାହିଁ । ତେଣୁ ଗୋପବନ୍ଧୁଙ୍କ ମୁହଁ ବନ୍ଦ କରିବା ପାଇଁ ଅନ୍ୟ ଉପାୟ ଖୋଜିଲେ ।

## ମୁହଁ ଉପରେ ୧୪୪ ଧାରା ଜାରୀ

ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ପୋଲିସ୍ ବିଭିନ୍ନ ଅଞ୍ଚଳରେ ୧୪୪ ଧାରା ଜାରି କରିଥାନ୍ତି । ସେହି ଅଞ୍ଚଳରେ ପାଞ୍ଚଜଣରୁ ଅଧିକ ଲୋକ ଏକାଠି ହୋଇ ଯିବାକୁ ପୋଲିସ୍ ବାଧା ଦିଅନ୍ତି । କେହି ସାଧାରଣ ସଭା

କରିପାରନ୍ତି ନାହିଁ । କିନ୍ତୁ ଜଣେ ଲୋକ ଉପରେ ୧୪୪ ଧାରା ଜାରି କରିବା ଆଗରୁ ଶୁଣା ନ ଥିଲା । ଗୋପବନ୍ଧୁଙ୍କ ଭାଷଣ ଶୁଣି ଶହ ଶହ ଲୋକ ଦେଶ କାମରେ ବାହାରିବା ଦେଖି ସରକାର ତାଙ୍କ ଉପରେ ୧୪୪ ଧାରା ଜାରି କଲେ । ସେ କୌଣସି ସ୍ଥାନରେ ମୁହଁ ଖୋଲି ଭାଷଣ ଦେଇପାରିବେ ନାହିଁ ବୋଲି ଆଦେଶନାମା ଜାରି ହେଲା । ଗାଉଁଲି ଭାଷାରେ କହିଲେ ସରକାର ତାଙ୍କ ମୁହଁରେ ତୁଣ୍ଡି ବାନ୍ଧିଦେଲେ । କୌଣସି ଗୋଟିଏ ଜାଗାପାଇଁ ଏ ନିଷେଧ ନଥିଲା, ଗୋପବନ୍ଧୁ ଯେଉଁ ଠିକୁ ଗଲେ ବି ଏ ତୁଣ୍ଡି ବନ୍ଧା ଆଦେଶ ଜାରି ରହିଲା । ଏପରିକି ରେଳ, ବସ୍ ବା ନୌକାରେ ଗଲାବେଳେ ସେ ଦେଶ କଥା ଆଲୋଚନା ନ କରିବାକୁ ସରକାର କଡ଼ା ନିୟମ କଲେ ।

ଗୋପବନ୍ଧୁ ଦବି ଯିବାର ଲୋକ ନଥିଲେ । ଜେଲ୍ ଯିବାକୁ ତାଙ୍କର ଭୟ ନ ଥିଲା । ସେ ସରକାରଙ୍କର ଏହି ଆଦେଶ ନ ମାନିବାକୁ ବିଚାରୁ ଥିଲେ । କିନ୍ତୁ ଜେଲ୍ ବାହାରେ ସେ ରହନ୍ତୁ ବୋଲି ଜାତୀୟ କଂଗ୍ରେସ ନେତାମାନେ ଚାହୁଁଥିଲେ । ତେଣୁ ୧୪୪ ଧାରା ଆଇନ୍ ଭାଙ୍ଗି ଜେଲ୍ ଯିବାକୁ ତାଙ୍କୁ କଂଗ୍ରେସ ଦଳ ଅନୁମତି ଦେଲା ନାହିଁ ।

ଗୋପବନ୍ଧୁ ବି ନଛୋଡ଼ ବନ୍ଧା । ସରକାରଙ୍କ ବିରୁଦ୍ଧରେ ସେ ଭାଷଣ ଲେଖିଲେ । ସଭାକୁ ବି ଗଲେ । ସେଠାରେ ସେ କିଛି ନ କହି ଠିଆ ହୋଇରହନ୍ତି । ଆଉ ଜଣେ କେହି ତାଙ୍କ ଲେଖା ଭାଷଣକୁ ପଢ଼ି ଦିଅନ୍ତି । ତାଙ୍କ ନାଁରେ କି କିମିଆ ଥିଲା  କେଜାଣି, ତାଙ୍କ ମୁହଁରୁ ନ ଶୁଣିବି, ତାଙ୍କ ଲେଖା ଭାଷଣ ଶୁଣି ଲୋକେ ପୂର୍ବଭଳି ଦେଶ ପ୍ରେମରେ

ମାତି ଯାଉଥିଲେ । କେତେ ପାଠ ପଢୁଆ ଛାତ୍ର ସ୍କୁଲ କଲେଜ ଛାଡ଼ିଲେ, ସରକାରୀ ଚାକିରିଆ ଚାକିରି ଛାଡ଼ିଲେ । ଶେଷକୁ ସରକାର ତାଙ୍କ ଲେଖା ଉପରେ ବି ୧୪୪ ଧାରା ଜାରି କଲେ ।

## କବି ଗୋପବନ୍ଧୁ

ଗୋପବନ୍ଧୁ କେବଳ ଜଣେ କର୍ମୀ ନ ଥିଲେ, ସେ ମଧ୍ୟ ଥିଲେ ଓଡ଼ିଶାର ଜଣେ ବଡ଼ କବି । ତାଙ୍କର ଅଧିକାଂଶ କବିତା ସ୍ୱାଧୀନତା ଲଢ଼େଇରେ ଭାଗ ନେଇ ଜେଲ୍ ଭୋଗୁଥିବା ବେଳେ କାରାଗାର ଭିତରେ ଲେଖା ହୋଇଥିଲା । ସେ ସବୁ କବିତା 'କାରା କବିତା', ''ବନ୍ଦୀର ଆତ୍ମକଥା'' ପ୍ରଭୃତି ବହିରେ ଏକାଠି କରି ଛପା ହୋଇଛି । ତା'ଛଡ଼ା ଓଡ଼ିଶାରେ କୋଣାର୍କ ଦେଉଳ ମୁଣ୍ଡି ମାରିବା ଘଟଣାକୁ ନେଇ ପ୍ରଚଳିତ ଲୋକପ୍ରିୟ କିମ୍ବଦନ୍ତୀ ଅବଲମ୍ବନରେ ସେ 'ଧର୍ମପଦ' ଏବଂ ଧର୍ମ ଭାବନା ଉପରେ ଆଧାରିତ 'ଗୋ ମାହାତ୍ମ୍ୟ' ପ୍ରଭୃତି ଛୋଟ ଛୋଟ କାବ୍ୟ କବିତା ଲେଖି ଯାଇଛନ୍ତି ।

କଥାରେ ଅଛି, ଯେଉଁ କବିତା କବିର ମୁଣ୍ଡରୁ ନ ବାହାରି ହୃଦୟରୁ ବାହାରିଥାଏ, ତାହା ସାଙ୍ଗେ ସାଙ୍ଗେ ପାଠକର ହୃଦୟକୁ ଛୁଇଁଯାଏ । ଗୋପବନ୍ଧୁ ଥିଲେ ଜଣେ ଭାବ ପ୍ରବଣ କବି । ସରଳ ଭାଷାରେ, ସାବଲୀଳ ଛନ୍ଦରେ କବିତାର ଧାଡ଼ି ସବୁ ଆପେ ଆପେ ତାଙ୍କ ହୃଦୟରୁ ଝରଣାର ଜଳ ଭଳି ବହି ଆସୁଥିଲା । ତାହା ପାଠକମାନଙ୍କ ମନକୁ, ହୃଦୟକୁ ଛୁଇଁ ଯାଉଥିଲା । ସେଥିପାଇଁ ତାଙ୍କ କବିତାର ପଦ ସବୁ

ପାଠକଙ୍କ ମନରେ ଦାଗ କାଟି ଯାଉଥିଲା, ଆପେ ଆପେ ମନେ ରହି ଯାଉଥିଲା । "ମିଶୁ ମୋର ଦେହ ଏ ଦେଶ ମାଟିରେ" କିମ୍ବା "ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ" ଅଥବା "ରହ ରହ କ୍ଷଣେ ବାଷ୍ପୀୟ ଶକଟ ...." ଇତ୍ୟାଦି ତାଙ୍କ କବିତାର ପଦ ପାଠକମାନଙ୍କ ତୁଣ୍ଡରେ ବାରମ୍ବାର ଉଚ୍ଚାରିତ ହେଉଥିଲା । କେବଳ କବିତା ନୁହେଁ, ତାଙ୍କର ଗଦ୍ୟ ଶୈଳୀ ମଧ୍ୟ ଥିଲା ଅତି ଚମତ୍କାର । 'ସତ୍ୟବାଦୀ' ସାହିତ୍ୟ ପତ୍ରିକାରେ ସେ ଯେଉଁ ସଂପାଦକୀୟ ଏବଂ ପ୍ରବନ୍ଧମାନ ଲେଖୁଥିଲେ ତାହା ସମସ୍ତେ ବୁଝି ପାରିଲା ଭଳି ଆଦର୍ଶ ଗଦ୍ୟ ଥିଲା ।

## 'ସମାଜ' କାଗଜ ବାହାରିଲା

ଗୋପବନ୍ଧୁଙ୍କ ଅମଳରେ ଓଡ଼ିଆ ଲୋକଙ୍କ ସୁଖ ଦୁଃଖ ଓ ଖବର ଅନ୍ତର ଜଣାଇବା ପାଇଁ ଗୋଟିଏ ଲକ୍ଷୁଆ ଖବର କାଗଜ ନ ଥିଲା । ଯେଉଁ ସବୁ ଖବର କାଗଜ ଥିଲା, ସେ ସବୁରେ ଲୋକଙ୍କ ସୁଖ ଦୁଃଖ କଥା ପ୍ରକାଶ ପାଉ ନ ଥିଲା । ସରକାରଙ୍କୁ ସୁହାଇଲା ଭଳି ଲେଖାମାନ ଛପା ଯାଉଥିଲା । ସେଥିପାଇଁ ଗୋପବନ୍ଧୁ ସତ୍ୟବାଦୀରେ ଗୋଟିଏ ପ୍ରେସ୍ ବସାଇ 'ସମାଜ' ଖବର କାଗଜ ବାହାର କଲେ । ୧୯୧୯ ମସିହା ବିଜୟା ଦଶମୀ ତିଥିରେ ଏହି ଖବର କାଗଜ ବାହାରିଲା । ପ୍ରଥମେ ଏହା ସପ୍ତାହକୁ ଥରେ ଲେଖାଁ ପ୍ରକାଶ ପାଉଥିଲା । ଗୋପବନ୍ଧୁଙ୍କ ମୃତ୍ୟୁପରେ ରାଧାନାଥ ରଥଙ୍କ ଚେଷ୍ଟାରେ ଏହା ଦୈନିକ ପ୍ରକାଶ

ପାଇଲା । ୧୯୨୫ ମସିହାରେ ଏହାର ଅଫିସ୍ ସତ୍ୟବାଦୀରୁ ପୁରୀକୁ ଉଠିଗଲା । ୧୯୨୭ ମସିହାରେ ପୁରୀରୁ ପୁଣି ଏହା କଟକକୁ ଆସିଲା ।

ଏହି କାଗଜ ମାଧ୍ୟମରେ ଗୋପବନ୍ଧୁ ଓଡ଼ିଶାର ଲୋକେ ବଢ଼ି ମରୁଡ଼ି ବେଳେ କିଭଳି ଦୁଃଖ କଷ୍ଟ ପାଉଥିଲେ ତାର ଟିକି ନିଖି ବିବରଣୀ ପ୍ରକାଶ କରୁଥିଲେ । ଏହାଛଡ଼ା ଦେଶ ତଥା ରାଜ୍ୟର ଅବସ୍ଥା, ଗାଁ ଗହଳର ସାଧାରଣ ଲୋକଙ୍କ ହାରିଗୁହାରି, ଦୁଃଖ ସୁଖ ବି ଏଥିରେ ପ୍ରକାଶ ପାଉଥିଲା ।

ବିଶେଷ କରି ବଡ଼ ବଡ଼ ସରକାରୀ ଚାକିରିଆ ଗରିବ ଗୁରୁବାଙ୍କୁ କିଭଳି ହଇରାଣ ହରକତ କରୁଥିଲେ ସେ କଥା ଗୋପବନ୍ଧୁ ଏହି କାଗଜରେ ଲେଖି ଛପାଇ ଦେଉଥିଲେ । କୌଣସି ରାଜା, ଜମିଦାର, ସାହୁକାରମାନେ ଗରିବମାନଙ୍କୁ ହଇରାଣ କଲେ, ସେକଥା ବି ଏଥିରେ ବାହାରୁଥିଲା । ସହଜେ ତ ସରକାରଙ୍କ ଜନବିରୋଧୀ ନୀତି ବିଷୟରେ ଏଥିରେ ଗୋପବନ୍ଧୁ ଲୋକଙ୍କୁ ଚେତାଇ ଦେଉଥିଲେ । ଫଳରେ ସରକାର, ବଡ଼ ସରକାରୀ ଚାକିରିଆ ଓ ବଡ଼ ବଡ଼ିଆ ଲୋକେ ସମାଜ କାଗଜ ବନ୍ଦ କରି ଦେବାକୁ ଉପାୟ ଖୋଜୁଥିଲେ । ଗୋପବନ୍ଧୁଙ୍କ ଉପରେ ବି ସେମାନଙ୍କର ରାଗ ଥିଲା । ଏହି କାଗଜ ପାଇଁ ସେମାନେ ତାଙ୍କ ଉପରେ ରକତ ଚାଉଳ ଚୋବାଉଥିଲେ । ଗୋପବନ୍ଧୁଙ୍କୁ କଳେ ବଳେ କୌଶଳେ ହଇରାଣ କରିବାକୁ ଚାହୁଁଥିଲେ । ତାଙ୍କ ନାଁରେ ସେମାନେ ମିଛ ସତ କରି କେତେ ମକଦ୍ଦମା ଦାୟେର କଲେ ।

ଥରେ ସେତେବେଳର ପୁରୀ ଜିଲ୍ଲା ବେଗୁନିଆ ଥାନାର ଗୋଟିଏ

ଖବର 'ସମାଜ'ରେ ବାହାରିଥିଲା । କେତେ ଜଣ ପୋଲିସ ଚାକିରିଆ ଲୋକଙ୍କ ଉପରେ ଅତ୍ୟାଚାର କରିଥିଲେ । ଏ ଖବର ସମାଜରେ ଯେମିତି ବାହାରିଛି, ସେମିତି ଗୋପବନ୍ଧୁଙ୍କ ନାଁରେ ମାନହାନୀ ମକଦ୍ଦମା ହେଲା । ପୋଲିସ୍ ବାଲା ମିଛ ସତ କରି କଚେରିରେ ଏହି ମକଦ୍ଦମା ଦାୟେର୍ କଲେ। ପୋଲିସ୍‌ବାଲାଙ୍କୁ ସରକାର ଉସ୍‌କାଇଲେ । ବିଚାର ହେବା ପୂର୍ବରୁ ଗୋପବନ୍ଧୁଙ୍କୁ ଗିରଫ୍ କରି ଜେଲ୍‌ରେ ରଖାଗଲା । ମାସେ କାଳ ସେ ବିନା ବିଚାରରେ ଜେଲ୍ ଭୋଗିଲେ । ଶେଷରେ ବିଚାରପତି ତାଙ୍କୁ ନିର୍ଦ୍ଦୋଷରେ ଖଲାସ କଲେ । ସରକାର ଓ ପୁଲିସ୍‌ବାଲାଙ୍କ ମୁହଁ କଳା ପଡ଼ିଗଲା ।

କିନ୍ତୁ ସେମାନଙ୍କ ଜିଦ୍ ଆହୁରି ବଢ଼ିଗଲା । 'ସମାଜ' କାଗଜ ବନ୍ଦ କରି ଦେବା ପାଇଁ ସେମାନେ ନୂଆ ନିୟମ କଲେ । ସେତେବେଳେ 'ସମାଜ' ପୁରୀରୁ ବାହାରୁଥିଲା । ପୁରୀ କିଲ୍‌ଟର ଦୁଇ ହଜାର ଟଙ୍କା ଅମାନତ ଜମା କରିବା ପାଇଁ ଗୋପବନ୍ଧୁଙ୍କୁ ଆଦେଶ ଦେଲେ । ଏତେ ଟଙ୍କା ସେ ଦେଇପାରିବେ ନାହିଁ ବୋଲି ସରକାର ଜାଣିଥିଲେ । ତେଣୁ କିଲ୍‌ଟର୍ ସାହାବ ମନେ ମନେ ଭାବିଥିଲେ 'ସମାଜ' ଆପେ ଆପେ ବନ୍ଦ ହୋଇଯିବ । ଗୋପବନ୍ଧୁ ଏତେବେଳେ ଖବର କାଗଜଟିକୁ ପୁରୀରୁ ଉଠାଇ ନେଇ କଟକ ଚାଲିଗଲେ । ପୁରୀ କିଲ୍‌ଟର ସାହାବଙ୍କ ଫନ୍ଦି କାମ ଦେଲା ନାହିଁ ।

ସେହି ସମୟର ଆଉ ଗୋଟେ ଘଟଣା । କଟକ ଜିଲ୍ଲାର କନିକା ଜମିଦାର ଲୋକଙ୍କ ଉପରେ ଭୀଷଣ ଅତ୍ୟାଚାର କରୁଥାନ୍ତି । ଜମିଦାରଙ୍କ

ଲୋକେ ସାଧାରଣ ଲୋକଙ୍କ ଘରଦ୍ୱାର ଲୁଟି ନେଉଥାନ୍ତି । ଝିଅ ବୋହୂଙ୍କ ଇଜ୍ଜତ ମହତ ଯାଉଥାଏ । ଗୋପବନ୍ଧୁ ସମାଜରେ ଲାଗ ଲାଗ ଏହି ସବୁ ଅତ୍ୟାଚାରର ସତ ବିବରଣୀ ଛପାଇଲେ । ଏହି ଖବର ସବୁ ବାହାରିଲା ପରେ ଜମିଦାର ଓ ଇଂରେଜ ସରକାର ଭାରି ରାଗିଗଲେ । ସେମାନେ ପୁଣି ତାଙ୍କ ନାମରେ ମକଦ୍ଦମା କଲେ । ତାଙ୍କୁ ଗିରଫ କରି ଜେଲ୍‌ରେ ରଖାଗଲା । ବିଚାରରେ ତାଙ୍କୁ ଦୁଇ ବର୍ଷ ଜେଲ୍‌ଦଣ୍ଡ ହୋଇଥିଲା ।

ଏହାର ଗୋଟିଏ ଭଲ ଫଳ ବି ମିଳିଲା ।ଦେଶର ଅନ୍ୟ ସବୁ ଅଞ୍ଚଳରେ କନିକା ଜମିଦାରଙ୍କ ଅତ୍ୟାଚାର କଥା ଲୋକେ ଜାଣିଲେ । ଏଥିପାଇଁ ଚାରିଆଡ଼େ ଆଲୋଡ଼ନ ସୃଷ୍ଟି ହେଲା । ଫଳରେ ଜମିଦାର ଦାଖଲ କରିଥିବା ମକଦ୍ଦମା ଉଠାଇ ନେଇଥିଲେ ।

୧୯୨୮ ମସିହା କଥା । ସେ ବର୍ଷ ମେ'ମାସରେ ପାରିକୁଦଠାରେ ପୋଲିସ୍ ସାଧାରଣ ଲୋକଙ୍କ ଉପରେ ନିର୍ମମ ଅତ୍ୟାଚାର କରିଥିଲେ । 'ସମାଜ'ରେ ଏ ଖବର ପ୍ରକାଶ ପାଇଲା । ସରକାର ଏ ଖବର ମିଛ ବୋଲି କହି ପାରିଲେ ନାହିଁ । କିନ୍ତୁ ଏ ଖବର କିଏ ଦେଇଛି ଜଣାଇବାକୁ ଗୋପବନ୍ଧୁଙ୍କୁ କୁହାଗଲା । ଗୋପବନ୍ଧୁ ଖବର ଦାତାଙ୍କ ନାଁ କହିଲେ ନାହିଁ । ଫଳରେ ପୋଲିସ୍‌ବାଲା ରାଗି ପଞ୍ଚମ ହୋଇଗଲେ । ଗୋପବନ୍ଧୁଙ୍କ ନାଁରେ ମକଦ୍ଦମା ହେଲା । ଏହି ମକଦ୍ଦମାର ବିଚାର ହୋଇ ତାଙ୍କ ଉପରେ ଶହେ ଟଙ୍କା ଜୋରିମାନା ବି ହେଲା। କିନ୍ତୁ ମକଦ୍ଦମାର ରାୟ ବାହାରିବା ବେଳକୁ ଗୋପବନ୍ଧୁଙ୍କ ଦେହାନ୍ତ ହୋଇସାରିଥିଲା ।

ଗୋପବନ୍ଧୁ ଜୀବନ ତମାମ ବିଶ୍ରାମ ନ ନେଇ ଅହରହ ଖଟୁଥିଲେ । ଆଜି ବନ୍ୟା ତ କାଲି ମରୁଡ଼ି । କେତେବେଳେ ସତ୍ୟବାଦୀ ସ୍କୁଲ ପାଇଁ କାମ । କେତେବେଳେ ଓଡ଼ିଆଙ୍କ ମାନ ରକ୍ଷା ପାଇଁ ଲଢ଼େଇ । କେତେବେଳେ ଦେଶ ସ୍ୱାଧୀନତା ପାଇଁ ସଂଗଠନ । ଖରା ନାହିଁ, ବର୍ଷା ନାହିଁ । ରୋଗ ବଇରାଗକୁ ବି ଖାତିର ନାହିଁ । କିଏ ଚେତେଇ ଦେଲେ କହନ୍ତି –

''ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋ'ର ମାଂସ ହାଡ଼ ।''

## ଜୀବନର ଶେଷଦିନ

୧୯୨୮ ମସିହା । ଗୋପବନ୍ଧୁଙ୍କୁ ସେତେବେଳେ ୫୧ ବର୍ଷ । ଦେଶ କାମରେ ସେ ବର୍ଷ ସେ ଏପ୍ରିଲ୍ ମାସରେ ଲାହୋର୍ ଯାଇଥିଲେ ।

ଲାହୋର୍‌ରୁ ଫେରିଲାବେଳେ ତାଙ୍କ ଦେହ ଖରାପ ହେଲା । ହାଓଡ଼ାରେ ପହଞ୍ଚିଲାବେଳକୁ ଅବସ୍ଥା ଗୁରୁତର ହେଲାଣି । ତାଙ୍କ ସାଙ୍ଗରେ ଥାଆନ୍ତି ପଣ୍ଡିତ ଲିଙ୍ଗରାଜ ମିଶ୍ର । ତାଙ୍କ ସେବା ଯତ୍ନରେ ଗୋପବନ୍ଧୁଙ୍କ ଦେହ ଟିକିଏ ଭଲ ହେଲା । ସେ ବାଲେଶ୍ୱର ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳକୁ ଯିବା ନିମନ୍ତେ ବାହାରିଲେ । ମାତ୍ର ପଣ୍ଡିତ ଲିଙ୍ଗରାଜ ଜୋର୍ କରି ତାଙ୍କୁ ସାକ୍ଷୀଗୋପାଳ ଫେରାଇ ଆଣିଲେ ।

ଡାକ୍ତରୀ ପରୀକ୍ଷା ହେବାରୁ ଜଣାପଡ଼ିଲା ଯେ, ତାଙ୍କୁ ଟାଇଫଏଡ୍ ଜ୍ୱର ହୋଇଛି । ସେତେବେଳେ ଏ ରୋଗ ପାଇଁ ଭଲ ଔଷଧ ମିଳୁ ନ ଥିଲା । ଯାହା ହେଉ ଢେର ଦିନ ଚିକିତ୍ସା ହେଲା ପରେ ତାଙ୍କ ଦେହ ସାମାନ୍ୟ ଭଲ ହେଲା ।

ଏହି ସମୟରେ ତାଙ୍କୁ କଲିକତା ଯିବା ପାଇଁ ଡାକରା ଆସିଲା । ସେଠାରେ ଓଡ଼ିଆ ଶ୍ରମିକମାନଙ୍କ ଉପରେ ମାଲିକମାନେ ଅତ୍ୟାଚାର କରୁଥାନ୍ତି । ଗୋପବନ୍ଧୁ ଥୟ ଧରି ରହି ପାରିଲେ ନାହିଁ । ସମସ୍ତେ ମନା କରୁଥାନ୍ତି । କିନ୍ତୁ ତାଙ୍କ ଜିଦ୍‌ରେ ସେ ଅଟଳ । ଶେଷକୁ ତାଙ୍କ ଜିଦ୍ ରହିଲା । ସେଠାକୁ ଗଲେ । କିନ୍ତୁ ପୁଣି ଜ୍ୱର ଲେଉଟିଲା । ସେ ସତ୍ୟବାଦୀ ପଳାଇ ଆସିଲେ । ଏଥର କିନ୍ତୁ ବହୁ ଚିକିତ୍ସା ସତ୍ତ୍ୱେ ଜ୍ୱର କମିଲା ନାହିଁ ।

୧୯୨୮ ମସିହା ଜୁନ୍ ମାସ ବାର ତାରିଖବେଳକୁ ଅବସ୍ଥା ଅଣାୟତ୍ତ ହୋଇପଡ଼ିଲା । ଗୋପବନ୍ଧୁ ଆଉ ବଞ୍ଚିବେ ନାହିଁ ବୋଲି ନିଜେ ଜାଣିଗଲେ । ବିଭିନ୍ନ ଅଞ୍ଚଳରୁ ଦଳ ଦଳ ଲୋକ ତାଙ୍କୁ ଦେଖିବାକୁ ଆସୁଥିଲେ । ବହୁ ସାଙ୍ଗ ସାଥୀ, କର୍ମୀ, ସହକର୍ମୀ ଆସି ପହଞ୍ଚୁଥିଲେ । ସେମାନଙ୍କୁ ଦେଖି ସେ ବିକଳରେ କାନ୍ଦି ପକାଉଥିଲେ ।

ମରଣକୁ ତାଙ୍କର ଭୟ ନ ଥିଲା । କିନ୍ତୁ ଯେତେ ସବୁ କାମ ହାତକୁ ନେଇଥିଲେ କିଛି ପୂରା ହୋଇ ନଥିଲା । ଦେଶ ସ୍ୱାଧୀନ୍ ହୋଇନାହିଁ । ଓଡ଼ିଶା ଅଲଗା ପ୍ରଦେଶ ହୋଇ ନାହିଁ । 'ସମାଜ' ଖବର କାଗଜ ଦୈନିକ ପ୍ରକାଶ ପାଇବା ଯୋଜନା ଥିଲା । ତାହା ବି ହୋଇ ପାରିନାହିଁ । ବଢ଼ି ମରୁଡ଼ିର ସ୍ଥାୟୀ ପ୍ରତିକାର ପାଇଁ କିଛି କାମ ହୋଇ

ନାହିଁ । ଆଖି ଆଗରେ ଭାସି ଆସୁଛି, ବଢ଼ି ମରୁଡ଼ିବେଳେ ଲୋକଙ୍କ ବିକଳ ଅବସ୍ଥା । କାମ ସବୁ ଅଧାରୁ ଛାଡ଼ି ତାଙ୍କୁ ଯିବାକୁ ହେବ । ଏହି କଥା ଭାବି ସେ ଦୁଃଖରେ କାତର ହୋଇ ପଡୁଥିଲେ ।

ଜୁନ୍‌ମାସ ୧୭ ତାରିଖ ବେଳକୁ ତାଙ୍କ ଅବସ୍ଥାରେ ଆହୁରି ଅବନତି ଘଟିଲା । ସେତେବେଳକୁ ତାଙ୍କର ଆଉ ଦୁଃଖ ନ ଥାଏ । ସମସ୍ତଙ୍କୁ ଆଶ୍ୱାସନା ଦେଲେ - ‘‘ଭଗବାନ ଓଡ଼ିଶାବାସୀଙ୍କ କଥା ବୁଝିବେ । ଗରିବର ସାହା ଭରସା ତ ସେହି ଜଗନ୍ନାଥ !’’ ସେଦିନ ସେତେବେଳର ‘ସମାଜ’ ଖବର କାଗଜର ପରିଚାଳକ ରାଧାନାଥ ରଥ ଆଉ ନିଜ ଜ୍ୱାଇଁ ରତ୍ନାକର ପତିଙ୍କୁ ପାଖକୁ ଡାକିଲେ । ମରଣ କାଳ ପାଖେଇ ଆସୁଥିବା କଥା ସେମାନଙ୍କୁ କହିଲେ । ଧୈର୍ଯ୍ୟ ନ ହରାଇ କାମ କରି ଯିବାକୁ ବି ଉପଦେଶ ଦେଲେ ।

ସେଦିନ ଉପରଓଳି ଗଡ଼ି ଯାଇ ସଞ୍ଜ ହେଲା । ଗୋପବନ୍ଧୁ ପାଖକୁ ସମସ୍ତଙ୍କୁ ଡାକିଲେ । ପୁଣି ସେମାନଙ୍କୁ ଦୁଃଖ ନ କରିବାକୁ ବୁଝାଇଲେ । ଆଖରବେଳା ଆସିଗଲା ବୋଲି କହିଦେଲେ । ସମସ୍ତଙ୍କୁ ପ୍ରାର୍ଥନା କରିବାକୁ କହିଲେ । ନିଜେ ବି ପ୍ରାର୍ଥନାରେ ଯୋଗଦେଲେ । ପ୍ରାର୍ଥନା ଶେଷ ହେଲାର ଅଳ୍ପ କିଛି ସମୟପରେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ସେଦିନ ଥିଲା ନେତ୍ରୋତ୍ସବ । ସେହି ପବିତ୍ର ଦିନରେ ମହାପୁରୁଷ ଗୋପବନ୍ଧୁଙ୍କର ମୃତ୍ୟୁ ହେଲା । ଓଡ଼ିଆ ଜାତି ତା’ର ମଣିକୁ ହରାଇ ମଣିହରା ହୋଇଗଲା ।

***